ଏହି ପୁସ୍ତକର ଅନ୍ତଃପ୍ରଚ୍ଛଦରେ ଆନୁମାନିକ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତକରେ ରଚିତ ଭାସ୍କର୍ଯ୍ୟର ପ୍ରତିଲିପି ମୁଦ୍ରିତ ହୋଇଛି । ନାଗାର୍ଜ୍ଜୁନକୋଣ୍ଡାର ଏହି ଧ୍ୱଂସାବଶେଷ ବର୍ତ୍ତମାନ ନୂଆଦିଲ୍ଲୀର ନ୍ୟାସନାଲ ମ୍ୟୁଜିୟମରେ ରକ୍ଷିତ । ଏହି ଭାସ୍କର୍ଯ୍ୟର ବିଷୟ : ରାଜା ଶୁଦ୍ଧୋଦନଙ୍କ ରାଜସଭାରେ ତିନିଜଣ ଜ୍ୟୋତିଷୀ ଭଗବାନ ବୁଦ୍ଧଙ୍କ ଜନନୀ ମାୟାଦେବୀଙ୍କ ସ୍ୱପ୍ନର ତାତ୍ପର୍ଯ୍ୟ ବ୍ୟାଖ୍ୟା କରୁଛନ୍ତି । ଜ୍ୟୋତିଷୀମାନଙ୍କ ଆସନ ନିକଟରେ ଲିପିକାର ବସି ସେମାନଙ୍କ ବକ୍ତବ୍ୟ ଲେଖି ଚାଲିଛନ୍ତି । ଅନୁମାନ, ଏହା ଭାରତର ଲିଖନକଳାର ପ୍ରାଚୀନତମ ଚିତ୍ରରୂପ ।

ଭାରତୀୟ ସାହିତ୍ୟସ୍ରଷ୍ଟା ଗ୍ରନ୍ଥମାଳା

# କମ୍ବନ

ଏସ୍. ମହାରାଜନ

ଅନୁବାଦ

ଭଗବାନ ଜୟସିଂହ



ସାହିତ୍ୟ ଅକାଦେମି

*Kamban* : Oriya translation by Bhagaban Jaisingh of the same title in English by S. Maharajan. Sahitya Akademi, New Delhi, 1995. Price : Rs 15/-



ପ୍ରଥମ ପ୍ରକାଶ : ୧୯୯୫

ISBN 81—7201—885-1

## ସାହିତ୍ୟ ଅକାଦେମି

ରବୀନ୍ଦ୍ର ଭବନ, ୩୫ ଫିରୋଜଶାହ ରୋଡ୍, ନୂଆଦିଲ୍ଲୀ ୧୧୦ ୦୦୧

ବିକ୍ରୟ କେନ୍ଦ୍ର :

'ସ୍ୱାତୀ', ମନ୍ଦିର ମାର୍ଗ, ନୂଆଦିଲ୍ଲୀ ୧୧୦ ୦୦୧

ଶାଖା ଅଫିସ :

ଜୀବନତାରା ଭବନ, ୨୩ ଏ/୪୪ ଏକ୍ସ, ଡାଇମଣ୍ଡ ହାରବର ରୋଡ୍,
କଲିକତା ୭୦୦ ୦୫୩

'ଗୁନା ବିଲ୍ଡିଂ', ଦ୍ୱିତୀୟ ମହଲା, ୩୦୪-୩୦୫, ଅନା ସାଲାଇ,
ଟେନାମ୍ପେଟ୍, ମାନ୍ଦ୍ରାଜ ୬୦୦ ୦୧୮

୧୭୨ ମୁମ୍ବାଇ ମରାଠୀ ଗ୍ରନ୍ଥ ସଂଗ୍ରହାଳୟ ମାର୍ଗ, ଦାଦର, ବମ୍ବେ ୪୦୦ ୦୧୪

ଏଡିଏ ରଙ୍ଗମନ୍ଦିର, ୧୦୯ ଜେ. ସି. ରୋଡ୍, ବାଙ୍ଗାଲୋର ୫୬୦ ୦୦୨

ମୂଲ୍ୟ : ୧୫-୦୦

ମୁଦ୍ରାକର :

ଦ' ପ୍ରିଣ୍ଟୋଭର୍ସ
ମୈତ୍ରୀ ସରଣୀ
କଟକ ୭୫୩ ୦୦୧

# ପ୍ରାକ୍-କଥନ

ଏସବୁ ଉଦ୍ଧୃତର ଦ୍ରୁତ ପଠନରୁ ମଧ୍ୟ ମୋର ପରିଷ୍କାର ମନେ ହେଲା, ଅନୁବାଦକ ଉଭୟ ଜଣେ କବି ତଥା ଏକ ଉଚ୍ଚମାନର ସ୍ୱର୍ଣ୍ଣକାର ଭାବେ କାର୍ଯ୍ୟ କରିଛନ୍ତି । କମ୍ବନଙ୍କ କାବ୍ୟର ଜାଗତିକ ସ୍ୱରୂପ ଉଭୟ ଉଚ୍ଚ ଓ ଉତ୍କଟ ବସ୍ତୁ ସହ ମାନବିକ ବର୍ଣ୍ଣନାର ଗଭୀର ସମ୍ପର୍କ ସ୍ଥାପନ କରିଥାଏ । ମନୁଷ୍ୟର ଅନୁଭୂତି ହିଁ ହୋଇଛି ତାଙ୍କର କାବ୍ୟିକ ବସ୍ତୁ । କାବ୍ୟସୃଷ୍ଟିର ଗାମ୍ଭୀର୍ଯ୍ୟଦ୍ୱାରା କବି ଦିବ୍ୟ, ଚିରନ୍ତନ ସହ ପାର୍ଥିବ ଓ ଅନୁଭୂତିପ୍ରସୂତର ମିଶ୍ରଣ କରିଛନ୍ତି ଯେଉଁଥିପାଇଁ ପୃଥିବୀର ପ୍ରତ୍ୟେକ ମହାନ କାବ୍ୟ ଚେଷ୍ଟିତ ଥାଏ ।

ଅନୁବାଦକଙ୍କର ଦକ୍ଷତାଦ୍ୱାରା ମୁଁ ଅଭିଭୂତ ଯଦିଓ ସେ ତାମିଲ ଭାଷାକୁ କର୍କଶ ବିଦେଶୀ ଇଂରେଜୀ ଭାଷାରେ ପୂର୍ଣ୍ଣ ରୂପାନ୍ତର କରିବା ଅସମ୍ଭବ ବୋଲି କ୍ଷୋଭ ପ୍ରକାଶ କରିଛନ୍ତି । ତଥାପି ଅନୁବାଦକ ମୂଳ ରଚନାର ବିଶେଷତ୍ୱକୁ ଅସାଧାରଣ ଉତ୍ସାହ ଓ ଅନୁରାଗଦ୍ୱାରା ପ୍ରତିଫଳିତ କରିଛନ୍ତି । ତାଙ୍କର ଇଂରେଜୀ ରୂପାନ୍ତର ବେଶ୍ ଫଳପ୍ରଦ ଓ ସ୍ୱାଗତଯୋଗ୍ୟ । ଶ୍ରୀ ମହାରାଜନଙ୍କର ଯତ୍ନଶୀଳ ଓ ସମ୍ବେଦନଶୀଳ ଅନୁବାଦ ଜରିଆରେ ଇଂରେଜୀ ଭାଷାଭାଷୀ ଲୋକମାନେ କମ୍ବନଙ୍କ ବିଷୟରେ ଜାଣି ଉପକୃତ ହେବେ ।

ଏଡୱାର୍ଡ ଲଉଡରସ୍

ଇଂରେଜୀ ବିଭାଗ
ଉଟା ବିଶ୍ୱବିଦ୍ୟାଳୟ
ସଲ୍ଟ ଲେକ୍ ସିଟି
ଉଟା ୮୪୧୧୨
ଆମେରିକା

# ସୂଚୀପତ୍ର

# ଉପକ୍ରମଣିକା

ବିଂଶ ଶତାବ୍ଦୀର ତାମିଲନାଡୁରେ କମ୍ବନଙ୍କ ଅଭୂତ ଲୋକପ୍ରିୟତା ଦୃଷ୍ଟିରୁ ବିଚାର କଲେ, କୌଣସି ବୈଦେଶିକ କମ୍ବନଙ୍କୁ ସାଂପ୍ରତିକ କାଳର ଜଣେ କବି ବୋଲି ଅନୁମାନ କରିବ । କମ୍ବନ ସାଂପ୍ରତିକ କାଳର ବହୁ ଜ୍ୱଳନ୍ତ ସମସ୍ୟା ବିଷୟରେ ପଦ୍ୟ ରଚନା କରିଛନ୍ତି । କିନ୍ତୁ କବି ଏଗାରଶହ ବର୍ଷ ପୂର୍ବେ ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିଲେ ଓ ମୃତ୍ୟୁବରଣ କରିଥିଲେ । ତାଙ୍କର ମହାନ କାବ୍ୟ ଶତାବ୍ଦୀ ଶତାବ୍ଦୀ ଧରି ଲୋକମାନଙ୍କ ମନରେ ତା'ର ପ୍ରଭାବ ବଜାୟ ରଖିଛି, କାରଣ ପ୍ରତ୍ୟେକ ସମୟର ଚିରନ୍ତନ ସମସ୍ୟାକୁ ନେଇ ତାଙ୍କର ଲେଖନୀ ଚାଳନା କରିଥିଲେ କବି, ଯାର ସମାଧାନ ସମୟର ଶେଷ ସୀମା ଲଭିଲା ପର୍ଯ୍ୟନ୍ତ ମନୁଷ୍ୟକୁ ଆକୃଷ୍ଟ କରି ରଖିବ ।

କମ୍ବନଙ୍କ ସୃଷ୍ଟିର ପଶ୍ଚାତ୍‌ଭାଗରେ ଏକ ସହସ୍ର ବର୍ଷର ଅଖଣ୍ଡ କାବ୍ୟ ପରମ୍ପରା ବିଦ୍ୟମାନ । ପ୍ରାକ୍ 'ବସନ୍ତ'ର ତାମିଲ କବିଙ୍କ ପରି ସେ ଏହାର ସୁଯୋଗ ଲଭି କରି ନାହାନ୍ତି । ତାଙ୍କର ଆବିର୍ଭାବ ପୂର୍ବରୁ ବହୁ ତାମିଲ ଗୁରୁ ଏ ଭାଷା ବ୍ୟବହାର କରିଛନ୍ତି । ପ୍ରାକ୍-ଖ୍ରୀଷ୍ଟିୟାନ୍ କାଳରେ ତାମିଲ ଭାଷା ଯେତେବେଳେ ପ୍ରସାରଣକ୍ଷମ ଓ ପ୍ରତିନିଷ୍ଠାଶୀଳ ଥିଲା, ସେତେବେଳେ 'ସଙ୍ଗମ' କବିଗଣ ଭାଷାକୁ ଏକପ୍ରକାର କୋମଳ ସୌନ୍ଦର୍ଯ୍ୟ ଏବଂ କଠୋରତା ପ୍ରଦାନ କରିଥିଲେ । ଦ୍ୱିତୀୟ ଶତାବ୍ଦୀର କବି ତିରୁବାଲୁବର ଭାଷାରେ ଲାଳିତ୍ୟ, ସଂକ୍ଷିପ୍ତତା ଓ ପରିଚ୍ଛନ୍ନତା ଆଣିଥିଲେ; ତାଙ୍କର ଦ୍ୱିପଦୀକୁ 'ରୌପ୍ୟ ଜାଲରେ ସ୍ୱର୍ଣ୍ଣର ସେଓ' ବୋଲି ଡଃ ଗ୍ରଉଲ୍ ବର୍ଣ୍ଣନା କରିଛନ୍ତି । ଷଷ୍ଠ ଓ ନବମ ଶତାବ୍ଦୀ ମଧ୍ୟରେ ବୈଷ୍ଣବ ସନ୍ନ୍ୟାସୀମାନେ (ଅଲୱାରଗଣ) ଏବଂ ଶୈବ ସନ୍ନ୍ୟାସୀମାନେ (ନୟନମାର୍‌ଗଣ) ଭାଷାରେ ଆବେଗାତ୍ମକ ଗୀତର ଅଦ୍ୱିତୀୟ କୋମଳତା ଯୋଗ କରିଥିଲେ । କମ୍ବନଙ୍କ ଆବିର୍ଭାବ ପୂର୍ବରୁ ଭାଷାର ସମସ୍ତ ବିଭବ ପୂର୍ଣ୍ଣ ବିନିଯୋଗ ହୋଇସାରିଛି ବୋଲି ମନେ ହେଉଥିଲା । କିନ୍ତୁ, ଏସବୁ ପ୍ରତିବନ୍ଧକ ସତ୍ତ୍ୱେ କମ୍ବନ ତାଙ୍କ ପ୍ରତିଭା ବଳରେ ଭାଷାକୁ ଏକ ସଦ୍ୟ ନୂତନ ଶୈଳୀରେ ବ୍ୟବହାର କରିଥିଲେ ଯାହା କବିତାର ଉତ୍କର୍ଷ ସାଧନ କରିବାକୁ ପୂର୍ଣ୍ଣ ସକ୍ଷମ ହୋଇଥିଲା ।

ରାମଙ୍କ ସରଳ କଥା ଅବଲମ୍ବନରେ କମ୍ବନ 'ରାମାୟଣ' ଲେଖିବାକୁ ପସନ୍ଦ କରିଥିଲେ, କାରଣ 'ମହାଭାରତ'ର ସମସ୍ତ ଜଟିଳତା (ଯେଉଁ ଜଟିଳତା ପାଠକକୁ କବିତାର ମୁକ୍ତ ପ୍ରଭାବରୁ ଅନ୍ତର କରିଥାଏ)ରୁ 'ରାମାୟଣ' ମୁକ୍ତ ଥିଲା । ବହୁ ଶତାବ୍ଦୀ ଧରି ତାମିଲମାନେ ରାମାୟଣରେ ମୁଖ୍ୟ ପ୍ରସଙ୍ଗ ସହ ପରିଚିତ ଥିଲେ ଏବଂ

ଅଲଓ୍ୱାରମାନଙ୍କ ଭଜନାବଳୀରୁ ରାମାୟଣର ବିଭିନ୍ନ କଥା ଉପଭୋଗ କରୁଥିଲେ । ଏପରି ଏକ ପରିଚିତ 'ସେଟିଂ' ବା ପୃଷ୍ଠଭୂମିର ପୂର୍ଣ୍ଣ ସଦୁପଯୋଗ କରିଥିଲେ କମ୍ବନ । ଫଳତଃ ପାଠକମାନଙ୍କ ଦୃଷ୍ଟିକୁ କାହାଣୀ ଉପରେ ସୀମାବଦ୍ଧ ହେବାକୁ ନ ଦେଇ ସେ ନିଜର ସୃଜନଶୀଳ, ବର୍ଣ୍ଣନାତ୍ମକ, ନାଟକୀୟ ଓ ଲାଳିତ୍ୟପୂର୍ଣ୍ଣ ପ୍ରତିଭା ଉପରେ ବିଶେଷ ପ୍ରକାଶ କରିବାକୁ ସୁଯୋଗ ସୃଷ୍ଟି କରିଥିଲେ । ବାସ୍ତବରେ, 'ରାମାୟଣ'ର ଉପକ୍ରମଣିକାରେ ଅତି ଗର୍ବର ସହ କବି ଲେଖିଛନ୍ତି ଯେ, କବିତାର ମହତ୍ତ୍ୱ ଓ ଦେବତ୍ୱ ପରିବେଷଣ କରିବାକୁ ସେ 'ରାମାୟଣ' ବିଷୟବସ୍ତୁର ପରିକଳ୍ପନା କରିଛନ୍ତି ।

'କମ୍ବ ରାମାୟଣ'ର ସୃଷ୍ଟିରେ, ବାସ୍ତବିକ୍, ଭବିଷ୍ୟତ ତାମିଲ କାବ୍ୟର ଧାରା ବଦଳିଯାଇଛି ଏବଂ ବିଗତ ଏକାଦଶ ଶତାବ୍ଦୀ ଧରି ଏହି ମହାକାବ୍ୟ ତାମିଲଙ୍କ କାବ୍ୟିକ ସମ୍ବେଦନାକୁ ଗଭୀର ଭାବେ ଅନୁପ୍ରାଣିତ କରିଆସିଛି । କମ୍ବନଙ୍କଠାରୁ ଆରମ୍ଭ କରି ଅଦ୍ୟାବଧି ବହୁ ବିଦ୍ୱାନ କମ୍ବ ରାମାୟଣ ଆବୃତ୍ତି କରି କିମ୍ବା ବ୍ୟାଖ୍ୟା କରି ଜନମାନସକୁ ଚମତ୍କୃତ କରି ଆସିଛନ୍ତି । ତାମିଲ ରାଜାମାନେ ଏହିପରି କଥକ ଓ ଗାୟକମାନଙ୍କ ଭରଣପୋଷଣ ପାଇଁ ସେମାନଙ୍କୁ ଜମିଜମା ମଧ୍ୟ ଦେଇଛନ୍ତି । କେରଳ, କର୍ଣ୍ଣାଟକ ଓ ଆନ୍ଧ୍ର ଭଳି ପଡ଼ୋଶୀ ରାଜ୍ୟର ପଥର-ଖୋଦେଇରୁ ଜଣାଯାଏ, ସେଠାରେ ମଧ୍ୟ କମ୍ବ ରାମାୟଣ ବ୍ୟାଖ୍ୟା କରାଯାଉଥିଲା ଏବଂ ସେଠାକାର ଲୋକମାନଙ୍କ ମାତୃଭାଷା ତାମିଲ ନ ହୋଇଥିଲେ ମଧ୍ୟ ସେମାନେ ଏ ରାମାୟଣ ଉପଭୋଗ କରୁଥିଲେ । ଏହିପରି କମ୍ବନ ଲୋକପ୍ରିୟ ଶିକ୍ଷା ଓ ସଂସ୍କୃତିର ଏକ ଶକ୍ତିଶାଳୀ ଆଧାର ଥିଲେ ଏବଂ ଦକ୍ଷିଣାତ୍ୟର ଲୋକଙ୍କ ଦୃଷ୍ଟିଭଙ୍ଗୀ, ଚରିତ୍ର ତଥା ରୁଚି ଓ ଧାର୍ମିକ ଦୃଷ୍ଟିଭଙ୍ଗୀକୁ ପରିମାର୍ଜିତ କରିଥିଲେ । ଚିରନ୍ତନ ଜାତୀୟ ସ୍ମୃତିର ଏକ ଅବିଚ୍ଛେଦ୍ୟ ଅଂଶବିଶେଷ ଥିଲା ତାଙ୍କର ରାମାୟଣ । ସମସ୍ତ କବି ଓ ବିଦ୍ୱାନମାନେ ତାଙ୍କୁ 'କବି ଚକ୍ରବର୍ତ୍ତୀ' କିମ୍ବା 'କାବ୍ୟ ସମ୍ରାଟ' ବୋଲି ଅଭିହିତ କରିଥିଲେ ଏବଂ ଇତିହାସ ପୃଷ୍ଠାରେ ସେ କବିମାନଙ୍କ ମଧ୍ୟରେ ଶ୍ରେଷ୍ଠ ବିଦ୍ୱାନ ବୋଲି ପ୍ରତିଷ୍ଠିତ ହୋଇ ରହିଛନ୍ତି । 'କମ୍ବ ରାମାୟଣ'ର ଲୋକପ୍ରିୟ ବ୍ୟାଖ୍ୟାକାରମାନେ ମାସ ମାସ ଧରି ପାରାୟଣ କରିଥାନ୍ତି ଏବଂ ବଡ଼ ଆଶ୍ଚର୍ଯ୍ୟର ବିଷୟ ଯେ—ଏପରି ସଭାରେ କୋଡ଼ିଏରୁ ତିରିଶି ହଜାର ଲୋକଙ୍କ ବିଶାଳ ସମାବେଶ ହୋଇଥାଏ, ଯେଉଁଠି ସେମାନେ ଗଭୀର ମନୋନିବେଶ ପୂର୍ବକ କମ୍ବନଙ୍କ କାବ୍ୟ ଶୁଣିଥାନ୍ତି । ଏକ ସହସ୍ର ବର୍ଷରୁ ଊର୍ଦ୍ଧ୍ୱ ଏ କବି ଯେଉଁଭଳି ଭାବେ ଜନମାନସକୁ ଆଲୋଡ଼ିତ କରି ରଖିଛନ୍ତି, ସେଥିରୁ ତାଙ୍କ ସୃଷ୍ଟିର ଚିରନ୍ତନତା ପ୍ରତିପାଦିତ ହୁଏ । କମ୍ବନ କେବେହେଲେ ସମୟ-ଅନୁପଯୋଗୀ ହେବେ ନାହିଁ, କାରଣ ସେ 'ଆସନ୍ତାକାଲି'ର ଶବ୍ଦରେ ଆମମାନଙ୍କ ସହ ତଥା ସାରା ପୃଥିବୀ ସହ କଥାବାର୍ତ୍ତା କରିଥାନ୍ତି ।

# କମ୍ବନଙ୍କ ଯୁଗ

'କମ୍ବନଙ୍କ ଯୁଗ' ବିଷୟରେ ଗବେଷକଙ୍କ ମଧ୍ୟରେ ଅନେକ ବାଦାନୁବାଦ ପରିଲକ୍ଷିତ ହୁଏ । ଗୋଟିଏ ମତ ଅନୁଯାୟୀ, କମ୍ବନ ନବମ ଶତାବ୍ଦୀର ଏବଂ ଅନ୍ୟ ଏକ ମତରେ ସେ ତ୍ରୟୋଦଶ ଶତାବ୍ଦୀର କବି । ପ୍ରଥମ ମତଟି ଅନେକଟା ଯୁକ୍ତିଯୁକ୍ତ ମନେହୁଏ ।

କିନ୍ତୁ ଗବେଷକଙ୍କ ସର୍ବସମ୍ମତ ମତରେ, କମ୍ବନ ଥିଲେ ତାଞ୍ଜୋର ଜିଲ୍ଲାର ଥିରୁବାଜୁନ୍ଦର ନାମକ ଏକ ଗ୍ରାମର ଅଧିବାସୀ । ସେ ଗାଁଆର ଜମିଦାର ସଦୟ୍ୟାପା ବଲାଲ ଥିଲେ ତାଙ୍କର ଜଣେ ଉଚ୍ଚ-ପ୍ରଶଂସକ ଓ ପୃଷ୍ଠପୋଷକ । କମ୍ବନଙ୍କ ପ୍ରତିଭା ବିକାଶରେ 'ସଦୟ୍ୟାପା' ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।

କମ୍ବନଙ୍କ ନାମକୁ କେନ୍ଦ୍ରକରି ଲୋକକଳ୍ପନାରେ ଅନେକ କିମ୍ବଦନ୍ତୀ ଗଢ଼ିଉଠିଛି । ଐତିହାସିକ ଦୃଷ୍ଟିକୋଣରୁ ଏହିସବୁ କିମ୍ବଦନ୍ତୀର ଯଦିଓ କୌଣସି ଉପଯୋଗିତା ନାହିଁ, ତେବେ ସେଗୁଡ଼ିକ କମ୍ବନଙ୍କ ପରି ଜଣେ ମହାନ କବିଙ୍କର ପ୍ରତିଭା ଆକଳନ କରିବାରେ ଅନେକ ସାହାଯ୍ୟ କରିଥାନ୍ତି ।

ଗୋଟିଏ କିମ୍ବଦନ୍ତୀ ଅନୁଯାୟୀ, କମ୍ବନ ଓଟ୍ଟାକୁଟ୍ଟାରଙ୍କ ସମସାମୟିକ ଥିଲେ । ଓଟ୍ଟାକୁଟ୍ଟର ଥିଲେ ଚୋଳ ରାଜାଙ୍କ ଦରବାରରେ ଜଣେ ଅତି ଅସାଧାରଣ କବି । ଅଲଙ୍କାର ଶାସ୍ତ୍ର ଓ କାବ୍ୟରଚନାର ବିଜ୍ଞାନରେ ନିଜର ପ୍ରଚଣ୍ଡ ପାରଦର୍ଶିତା ଥିବାରୁ ତତ୍କାଳୀନ ସମସ୍ତ ସାହିତ୍ୟିକମାନଙ୍କ ମନରେ ଆତଙ୍କ ସୃଷ୍ଟି କରିପାରୁଥିଲେ । ନିଜର ଅଜ୍ଞତା ବଶତଃ ଯଦି କୌଣସି କବି ବ୍ୟାକରଣ, ଶବ୍ଦ ବିନ୍ୟାସ ଓ ଧ୍ୱନି ଶାସ୍ତ୍ରରେ ସାମାନ୍ୟ ତ୍ରୁଟି ପ୍ରଦର୍ଶନ କରୁଥିଲା, ତା'ହେଲେ ଓଟ୍ଟାକୁଟ୍ଟର ସେମାନଙ୍କ ଶିରଚ୍ଛେଦନ ପାଇଁ ରାଜାଙ୍କୁ ପ୍ରଭାବିତ କରିପାରୁଥିଲେ । କିନ୍ତୁ କମ୍ବନଙ୍କ ଆବିର୍ଭାବ ପରେ ପ୍ରଚଳିତ ବ୍ୟାକରଣ ପଦ୍ଧତିରେ ଘୋର ପରିବର୍ତ୍ତନ ସଂଘଟିତ ହୋଇଥିଲା । କମ୍ବନ ନିଜର ପ୍ରଚଣ୍ଡ ପ୍ରତିଭା ବଳରେ ବହୁବିଧ ସଙ୍ଗୀତ ଶୈଳୀ ଉଦ୍ଭାବନ କରି ଓଟ୍ଟାକୁଟ୍ଟରଙ୍କ ପାରମ୍ପରିକ ଶୈଳୀକୁ ଅତିକ୍ରମ କରିପାରିଥିଲେ । ଫଳତଃ, ରାଜାଙ୍କ ଉପରେ ଥିବା ଓଟ୍ଟାକୁଟ୍ଟରଙ୍କ ପ୍ରଭାବର ପ୍ରାଚୀର ଭୁଷୁଡ଼ି ପଡ଼ିଥିଲା ଏବଂ କମ୍ବନ ଚୋଳ ଦରବାରରେ 'ରାଜକବି' ଭାବେ ନିଯୁକ୍ତ ହୋଇଥିଲେ ।

ତେବେ ରାଜା ଉଭୟଙ୍କୁ କବିଙ୍କୁ ରାମଙ୍କ ପୌରାଣିକ ଗାଥା ଉପରେ କାବ୍ୟ ରଚନା କରିବାକୁ ଅନୁରୋଧ କଲେ । ଓଟ୍ଟାକୁଟର ଅତୀବ ମନୋନିବେଶ ପୂର୍ବକ କାର୍ଯ୍ୟ ଆରମ୍ଭ କଲେ ଏବଂ ବହୁ ପରିଶ୍ରମ କରି ଅତି ନିମ୍ନମାନର ଏକ କାବ୍ୟ ପ୍ରସ୍ତୁତ କଲେ । କିନ୍ତୁ କମ୍ବନ ତୁରନ୍ତ କାମ ନକରି ବରଂ ଆମୋଦ ପ୍ରମୋଦରେ ସମୟ ଅତିବାହିତ କଲେ । କିଛିଦିନ ପରେ, ରାଜା ଉଭୟଙ୍କୁ ରାଜଦରବାରକୁ ଡାକି ସେମାନଙ୍କ ଅଗ୍ରଗତି ବିଷୟରେ ପ୍ରଶ୍ନକଲେ । କମ୍ବନ କହିଲେ, ସେ ଷଷ୍ଠକାଣ୍ଡ ପର୍ଯ୍ୟନ୍ତ ପହଞ୍ଚିଗଲେଣି ଏବଂ ବର୍ତ୍ତମାନ ରାମ-ରାବଣ ଯୁଦ୍ଧର ଅବ୍ୟବହିତ ପୂର୍ବରୁ ବାନର-ସେନାଙ୍କ ସେତୁବନ୍ଧ ନିର୍ମାଣ ଉପରେ କାବ୍ୟ ରଚନା କରୁଛନ୍ତି । କମ୍ବନଙ୍କ ଏପରି କଥାରୁ ଓଟ୍ଟାକୁଟର ଜାଣିପାରିଲେ ଯେ, କମ୍ବନ ଏପରିକି ପ୍ରଥମ କାଣ୍ଡ ମଧ୍ୟ ଆରମ୍ଭ କରିନାହାନ୍ତି । ଏଣୁ ସେ କମ୍ବନଙ୍କୁ ସେତୁବନ୍ଧ ନିର୍ମାଣ ଉପରେ ନିଜ ରଚନାରୁ ପଂକ୍ତିଟିଏ ଆବୃତ୍ତି କରିବାକୁ କହିଲେ । କମ୍ବନ, ତତ୍କ୍ଷଣାତ୍ ସ୍ୱତଃସ୍ଫୂର୍ତ୍ତି ଭାବେ ନିମ୍ନଲିଖିତ ପ୍ରାକ୍-ପ୍ରସ୍ତୁତିଶୂନ୍ୟ ପଂକ୍ତିଟି ଆବୃତ୍ତି କରିଦେଲେ;

କୁମୁଦ : ବାନରଙ୍କ ମୁଖ୍ୟ
ସମୁଦ୍ରେ ଫିଙ୍ଗିଲେ ପର୍ବତ
ମୃଜ ନର୍ତ୍ତକୀ ନୃତ୍ୟ ଛନ୍ଦ
ଓଡ଼ିଁ ପ୍ରସ୍ତର ବକ୍ଷ-ଦେଶ
ପଡ଼ିଲା ଗର୍ଜିଲ ସମୁଦ୍ରେ
ମନ୍ଥିଲା ସମୁଦ୍ରର ନୀରେ
ଉଠିଲା ଜଳ ବିନ୍ଦୁମାନ
ଛୁଇଁଲା ଆକାଶ ମଥାନ
ସ୍ୱର୍ଗରେ ଥିଲେ ଯେତେ ଦେବ
ଆନନ୍ଦେ ହେଲେ ନୃତ୍ୟରତ
ଭାବିଲେ ସମୁଦ୍ରୁ ଅମୃତ
ପୁନଶ୍ଚ ହେବ ଉଦଭବ ।

କମ୍ବନଙ୍କ ଏପରି ଏକ ଅନୁପମ ପ୍ରାକ୍-ପ୍ରସ୍ତୁତିଶୂନ୍ୟ ପଂକ୍ତିଟି ଶୁଣି ତାଙ୍କ ପଦ୍ୟରେ ସେ 'ଥୁମି' ଶବ୍ଦ ପ୍ରୟୋଗ କରିଥିବାରୁ ଓଟ୍ଟାକୁଟର ତାଙ୍କୁ ନିନ୍ଦା କଲେ । କମ୍ବନ କହିଲେ, ତାଙ୍କ ପଦ୍ୟରେ ସେ ବ୍ୟବହାର କରିଥିବା 'ଥୁମି' ଶବ୍ଦର ଅର୍ଥ ହେଉଛି, 'ଜଳବିନ୍ଦୁ' । ଓଟ୍ଟାକୁଟର ପ୍ରତିବାଦ କରି କହିଲେ, ଏହା 'ଥୁମି' ନୁହେଁ—ଏହା 'ଥୁଲି' ହେବା ଉଚିତ । କମ୍ବନ କିନ୍ତୁ ଏ ଶବ୍ଦର ଲୋକପ୍ରିୟ ପ୍ରଚଳନ ଅଛି ବୋଲି ଦୃଢ଼ ସ୍ୱରରେ କହିଲେ । ଓଟ୍ଟାକୁଟର ଏହାର ପ୍ରମାଣ ଖୋଜିବାରୁ କମ୍ବନ

ତାଙ୍କୁ ତଥା ରାଜାଙ୍କୁ ସହର ଭିତରକୁ ନେଇଗଲେ । ବାଟରେ ଯାଇ ଯାଇ ଜଣକଣ ଏକ ମେଷପାଳିକାଙ୍କୁ ତା ଘର ସାମ୍ନାରେ ଦହି ମନ୍ଥନ କରୁଥିବାର ଦେଖିଲେ ଏବଂ ସେ ତାଙ୍କ ନିକଟରେ ଖେଳୁଥିବା ପିଲାମାନଙ୍କୁ କହିବାର ଶୁଣିଲେ, 'ଏଠୁ ଯା'ରେ ପିଲାମାନେ, ନହେଲେ ତମ ଦେହରେ ସବୁ 'ଥୁମ୍ପି' (କ୍ଷୁଦ୍ରବିନ୍ଦୁ) ଛିଟିକି ପଡ଼ିବ ।' ଏହା କହି ସ୍ତ୍ରୀ ଲୋକଟି ରହସ୍ୟଜନକ ଭାବେ ଅଦୃଶ୍ୟ ହୋଇଗଲେ । ଓଟ୍ଟାକୁଟର ଜାଣିପାରିଲେ ଯେ, ସେ ସ୍ତ୍ରୀ-ଲୋକଟି ସ୍ୱୟଂ ବିଦ୍ୟାଦେବୀ ମା' ସରସ୍ୱତୀ । କମ୍ବନଙ୍କ ନୂତନ ଶବ୍ଦକୁ ସାକାର କରିବାକୁ ସେ ମେଷପାଳିକା ରୂପ-ଧାରଣ କରି ଅବତୀର୍ଣ୍ଣ ହୋଇଥିଲେ ।

ମର୍ମାହତ ହୋଇ ଘରକୁ ଫେରିଲେ ଓଟ୍ଟାକୁଟର ଏବଂ ଶବ୍ଦ-କୋଷ ସାହାଯ୍ୟରେ ଅତି ପରିଶ୍ରମ କରି ଲେଖିଥିବା 'ରାମାୟଣ'ର ସାତଟି କାଣ୍ଡକୁ ଚିରିଚିରି କରି ଫିଙ୍ଗି ପକାଇଲେ । ଠିକ୍ ଏହି ଜଟିଳ ସମୟରେ, ଦୈବାତ୍, ନିଜର ପ୍ରତିଦ୍ୱନ୍ଦ୍ୱୀଙ୍କ ଘରେ ପହଞ୍ଚିଲେ କମ୍ବନ ଏବଂ ଦେଖିଲେ ଯେ 'ରାମାୟଣ'ର ଶେଷ ସର୍ଗ 'ଉତ୍ତରକାଣ୍ଡ'ଟି ଚିରି ହୋଇନାହିଁ । ନିଜର ଚରିତ୍ରଗତ ବିନମ୍ର ସ୍ୱଭାବରେ ସେ ନିଜର ପ୍ରତିଦ୍ୱନ୍ଦ୍ୱୀଙ୍କ ହାତକୁ ଚାପିଧରି ତାଙ୍କୁ ଏ କାଣ୍ଡଟିକୁ ନ ଚିରିବାକୁ ଅନୁରୋଧ କଲେ । ଏବଂ ଏହାକୁ ନିଜର ପ୍ରସ୍ତାବିତ 'ରାମାୟଣ'ର ଶେଷ କାଣ୍ଡ ଭାବେ ବ୍ୟବହାର କରିବାକୁ ତାଙ୍କର ସମ୍ମତି ପ୍ରାପ୍ତ କଲେ ।

ସମାଜର ମୂଲ୍ୟବୋଧ-ହ୍ରାସ-ଜନିତ ସଙ୍କଟ ସମୟରେ ସମାଜର କଲ୍ୟାଣ ଦୃଷ୍ଟିରୁ କମ୍ବନଙ୍କ ବାଣୀର ବିଶ୍ଳେଷଣ ହେବା ଆବଶ୍ୟକ । କମ୍ବନଙ୍କ ବିଚାରରେ, ସୀମାହୀନ ଗାମ୍ଭୀର୍ଯ୍ୟ ଭିତରେ ଜୀବନର ଅର୍ଥ ଉତ୍କୀର୍ଣ୍ଣ । ଏଣୁ ସେ କ୍ଷଣଭଙ୍ଗୁର ସଂସାରର ଅସ୍ଥାୟୀ ସତ୍ତାକୁ ଉଦ୍ଧରଣ ପ୍ରଦାନ ପୂର୍ବକ ଏକ ଅକ୍ରମ ଓ ଚିରନ୍ତନ ସ୍ୱର ଅତି ସଫଳ ଭାବେ ଶୁଣାଇଛନ୍ତି ତାଙ୍କ ପୁରାଣରେ । ନିଜର ଉପଲବ୍ଧି ମାଧ୍ୟମରେ ସତ୍ୟ, ଶିବ ଓ ସୁନ୍ଦରକୁ ପରିବ୍ୟକ୍ତ କରିଛନ୍ତି ଯାହା ଆମ ଆତ୍ମାକୁ ପ୍ରଭୂତ ଶକ୍ତି ଯୋଗାଉଛି । ଏହାର ମାଧ୍ୟମରେ ସେ ଆମର ସମସ୍ତ ଅହଙ୍କାରକୁ ଖଣ୍ଡନ କରି ଆମ ମନରେ 'ଆନନ୍ଦ'ର ନୂତନ ଉତ୍ସ ସୃଷ୍ଟି କରିଛନ୍ତି ।



# ବାଳ କାଣ୍ଡ

## ରାମଙ୍କ ପ୍ରଥମ ଯୁଦ୍ଧ

ପ୍ରଥମେ କମ୍ବନଙ୍କଦ୍ୱାରା ବର୍ଣ୍ଣିତ ରାମଙ୍କ ପ୍ରଥମ ସମର ବିଷୟରେ ନିରୀକ୍ଷଣ କରାଯାଉ । ରାଜା ଦଶରଥଙ୍କ ଅନିଚ୍ଛା ସତ୍ତ୍ୱେ ବାଳକ ରାମ ଓ ଲକ୍ଷ୍ମଣଙ୍କୁ ଋଷି ବିଶ୍ୱାମିତ୍ର ନିଜ ତତ୍ତ୍ୱାବଧାନକୁ ନେଇ ଏକ ନିକାଞ୍ଚନ ମରୁଭୂମି ଦିଗକୁ ଯାତ୍ରା କଲେ । ଜଙ୍ଗଲର ମଧୁର ସବୁଜିମା, ପାହାଡ଼ ଦେଇ ବୋହି ଯାଉ ଯାଉ ସମତଳ ଭୂମିରେ ହଠାତ୍ ଅଟକି ଯାଇ ପୁନଶ୍ଚ ଅଟୁଳ ପ୍ରସ୍ତର ଉପରେ ଲମ୍ଫ ମାରୁଥିବା ଶୀତଳ ନଈ ମଧ୍ୟଦେଇ ବିଶ୍ୱାମିତ୍ର ତିନୋଟି ଚରିତ୍ରଙ୍କୁ ନେଲା ପରେ ଏହି ମରୁଭୂମି ତାଙ୍କର ଦୃଷ୍ଟିପଥାରୂଢ଼ ହୋଇଛି ଯାହାର ନିକାଞ୍ଚନତ୍ୱ ଅତି ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି କମ୍ବନ । ନଈର ଏତାଦୃଶ ଅଟକି ଯାଇ ପୁନଶ୍ଚ ବହିଯିବା ନଦୀର ଦୃଶ୍ୟ ନର୍ତ୍ତକୀ ପାଦର ନୂପୁର ଶବ୍ଦ ପରି ମନେହୁଏ । ମରୁଭୂମିଟି ଦିଶୁଥିଲା ଅତୀବ ଶୁଷ୍କ, ରୁକ୍ଷ ଓ ଜଳକଣାଶୂନ୍ୟ । କବି କମ୍ବନ ମରୁଭୂମିର ଶୁଷ୍କତାକୁ ମଣିଷ ମନର ଦୁଇ ଅସଙ୍ଗତ ଅବସ୍ଥା ସହ ତୁଳନା କରିଛନ୍ତି । ମଣିଷ ମନର ଏହି ଦୁଇ ଅବସ୍ଥା ହେଲେ—ଚରମ ସତ୍ୟର ଅନୁସନ୍ଧାନକାରୀ ଓ ବାରନାରୀ । ଚରମ ସତ୍ୟକୁ ଖୋଜୁଥିବା ମଣିଷ ତାର ଭୟଙ୍କର ସନ୍ଧାନ ଜାରିରଖି ନିଜ ଇଚ୍ଛାଶକ୍ତିର ବହୁ ଊର୍ଦ୍ଧ୍ୱରେ ପହଞ୍ଚି ଶେଷରେ ନିର୍ଲିପ୍ତ ହୋଇପଡ଼େ । ସେହିପରି ବାରନାରୀ ନିଜ ଦେହର ବାସନାକୁ ବନ୍ଦୀ କରି କରି ପରିଶେଷରେ ଇଚ୍ଛାର ବାସନା ହରେଇବସେ । ଏଠାରେ ଉଲ୍ଲେଖନୀୟ ଯେ, କବି ନିଜର ବୁଦ୍ଧିଚାତୁର୍ଯ୍ୟଦ୍ୱାରା ଉଭୟ ପରସ୍ପରବିରୋଧୀ ବିଭବର ଏକ ଆଶ୍ଚର୍ଯ୍ୟଜନକ ଯୋଗସୂତ୍ର ସ୍ଥାପନ କରିଛନ୍ତି ।

ଏପରି ଏକ ରୁକ୍ଷ ମରୁଭୂମିର ପୃଷ୍ଠଭୂମିରେ ବିଶ୍ୱାମିତ୍ର ରାମଙ୍କୁ ତାଡ଼କା ନାମକ ଏକ ଅସୁରୁଣୀର ଅପାର୍ଥିବ ଅତ୍ୟାଚାରର ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି ।

ତାଡ଼କା ଅସୁରୁଣୀର ନିବାସ ନିକଟସ୍ଥ ଜଙ୍ଗଲରେ ବୋଲି ବିଶ୍ୱାମିତ୍ର କହିବା ପୂର୍ବରୁ ସେମାନଙ୍କ ସମ୍ମୁଖରେ ଏକ ବିଶାଳ କୃଷ୍ଣକାୟା ସ୍ତ୍ରୀ ଉପସ୍ଥିତ ହେଲା । ତା'ର କେଶର ରଙ୍ଗ ଥିଲା ଲୋହିତ ବର୍ଣ୍ଣର । ଜ୍ୱଳମାନ ଘନକୃଷ୍ଣ ପାହାଡ଼ ପରି ଦିଶୁଥିଲା ତାର ରୂପ । ପ୍ରବଳ କ୍ରୋଧରେ ତାର ଭ୍ରୂ କମ୍ପିତ ହେଉଥିଲା । ଅଧର କୁଞ୍ଚନ କରି ତା'ର ଗହ୍ୱରସଦୃଶ ମୁଖ ବନ୍ଦକଲା ରାକ୍ଷସୀ । ତାର ଗଳାର ସ୍ୱରପାଖେ ଝୁଲୁଥିଲେ

ହାତୀଙ୍କର ଏକ ମାଳ ଏବଂ ପ୍ରତ୍ୟେକ ପ୍ରାଣୀଦ୍ୱୟଙ୍କ ଶୁଣ୍ଢ ପରସ୍ପର ସହ ଛନ୍ଦି ହୋଇ ରହିଥିଲେ । ରାକ୍ଷସୀ ଏମିତ ଏକ ଗର୍ଜନ କଲା, ତା'ର ଶବ୍ଦରେ ସ୍ୱର୍ଗ, ମର୍ତ୍ତ୍ୟ ଏବଂ ସପ୍ତ ଭୁବନ କମ୍ପି ଉଠିଲେ । ଭୟରେ ସ୍ତବ୍ଧ ହେଲା ବନ୍ୟ ।

ରାକ୍ଷସୀର ପ୍ରଭୂତ ଶକ୍ତି ବିଷୟରେ ନିମ୍ନଲିଖିତ ପଦ୍ୟରେ ବର୍ଣ୍ଣନା କରିଛନ୍ତି କବି :

ଭାସମାନ ମେଘଖଣ୍ଡ ହାତେ ଗ୍ରାସି ଧରି
ମର୍ଦ୍ଦନ କରିଣ ଗିଳେ ବିକଟୀ ରାକ୍ଷସୀ.
ଗୋଇଠା ପ୍ରହାର କରି ଚୂନା କରେ ପ୍ରକାଣ୍ଡ ପର୍ବତ
ବିଶାଳ ତା' ଦାନ୍ତେ କାଟେ ନିଜର ଅଧର
ଦାନ୍ତମାନ ଦିଶୁଥାଏ ଅର୍ଦ୍ଧଚନ୍ଦ୍ର ସମ
ତ୍ରିଶୂଳ ଉଠାଇ ଗର୍ଜେ : 'ତୁ ପାଇବୁ ଏହିକ୍ଷଣି
ତୋ ଶୁଣ୍ଢରେ ଏହାର ପ୍ରହାର ।'

ବିଶ୍ୱାମିତ୍ର ଭାବିଲେ, ଶକ୍ତି ପରୀକ୍ଷା ପାଇଁ ବର୍ତ୍ତମାନ ରାମଙ୍କର ପ୍ରକୃଷ୍ଟ ସମୟ ଆସିଯାଇଛି ।

ଋଷି କହିଲେ, 'ହେ ଅନୁପମ ! ଏ ରାକ୍ଷସୀ କଲ୍ମଷସ୍ତ ପାପର ସମସ୍ତ ସୋପାନ ଅତିକ୍ରମ କରି ସାରିଛି । ସେ ଆମକୁ ନମାରି ବଞ୍ଚେଇ ରଖିଛି, କାରଣ ତା ବିଚାରରେ, ଆମେ ସବୁ ଅସାର ଶୁଷ୍କ ପଦାର୍ଥ ଯାହାକୁ ଭୋଜନ କରିଯାଇ ନପାରେ । ଆମର ଅପଦାର୍ଥତ୍ୱ ତାର ଏକମାତ୍ର ପ୍ରତିବନ୍ଧକ । ଆପଣ କ'ଣ ଏ ରାକ୍ଷସୀକୁ ନାରୀ ବୋଲି ପରିଗଣନା କରିବେ ନା ଭାବିବେ ଯେ, ଏ ଏକ ସୁନ୍ଦର କେଶବିନ୍ୟାସରେ ଭୂଷିତା ସୁନ୍ଦରୀ କୋମଳ ପରୀ ?'

ମୃଦୁ ସ୍ୱରରେ ଋଷି ରାମଙ୍କୁ କ'ଣ କହୁଛନ୍ତି, ଠଉରେଇନେଲା ରାକ୍ଷସୀ । ତତ୍କ୍ଷଣାତ୍ ତାର ଶ୍ୱେତାଭ ଚକ୍ଷୁରୁ ଅଗ୍ନି ନିର୍ଗତ କରି ତା'ର ଅଗ୍ନିସମ ଲୋହିତ ତ୍ରିଶୂଳ ନେଇ ରାମଙ୍କ ଉପରେ ପ୍ରହାର କଲା ।

କେହି ତ ଦେଖିଲେ ନାହିଁ
ରାମ କେବେ ଯୋଖିଲେ ଶରକୁ
କେଉଁପରି ଟାଣିଲେ ସେ
ଅନୁପମ ନିଜର ଧନୁକୁ
କିନ୍ତୁ ସେଠି ଦେଖାଗଲା
ତ୍ରିଶୂଳର ଖଣ୍ଡ ଖଣ୍ଡ ଚୂର୍ଣ୍ଣୀଭୂତ ରୂପ

ଯେ ତ୍ରିଶୂଳ ଫିଙ୍ଗିଥିଲା ସେ ରାକ୍ଷସୀ
ତୋଳି ତାକୁ, ବୃକ୍ଷରୁ ମୂଳରୁ ।

ଏହାପରେ ରାକ୍ଷସୀ ଶବ୍ଦ ବେଗରେ ପ୍ରସ୍ତର ଖଣ୍ଡମାନ ଫିଙ୍ଗିବାକୁ ଆରମ୍ଭ କଲା । ପ୍ରସ୍ତରଖଣ୍ଡମାନଙ୍କର ଏକ ବର୍ଷା ସୃଷ୍ଟି ହେଲା ଯାହା ଏପରିକି ସମୁଦ୍ରମାନଙ୍କୁ ପୋତି ଦେଇ ପାରିଥାନ୍ତା । ରାକ୍ଷସୀର ଦେହର ରଙ୍ଗ ଅନ୍ଧାର ଦ୍ୱାରା ଢ଼ାଞ୍ଚା ହେଲା ଭଳି ଲାଗୁଥିଲା । ରାମ ଶରମାନଙ୍କର ବର୍ଷା ସୃଷ୍ଟି କରି ରାକ୍ଷସୀର ପ୍ରତିରୋଧ କଲେ । ଏହାପରେ ରାମ ଏପରି ଏକ ତୀକ୍ଷ୍ଣ ଶର ନିକ୍ଷେପ କଲେ, ଯାହା ଏକ ନିଷ୍ଠୁର ଶବ୍ଦ ପରି କମ୍ପୁ ଦୁଷ୍ଟଲୋକ ପ୍ରତି ଜ୍ଞାନବାନର ଉପଦେଶ ପରି ରାକ୍ଷସୀର ବକ୍ଷ ଭେଦ କଲା । ତାର ହୃଦୟର ଗର୍ଭ ଦେଇ ବହିଯାଉଥିବା ରୁଧିର ମରୁଭୂମି ସାରା ବ୍ୟାପିଗଲା । ବୋଧହେଲା—ସତେ ଯେପରି ସୂର୍ଯ୍ୟାସ୍ତର ଗୋଲାପ ଆକାଶ ବୃନ୍ତରୁ ବିଚ୍ୟୁତ ହୋଇ ପୃଥିବୀ ଉପରେ ଖସିପଡ଼ୁଛି ।

ଏହିପରି ରାମଙ୍କର ପ୍ରଥମ ସମରରେ ମୃତ୍ୟୁଦେବତା ନିଜର ଅଧରରେ ରାକ୍ଷସ ବଂଶର ପ୍ରଥମ ରକ୍ତ ସ୍ପର୍ଶ କରି ଏହାର ସ୍ୱାଦ ବାରି ଓଠ ଚାଟିଲା ।

## ମହାବଳୀ ଉପାଖ୍ୟାନ

ତାଡ଼କା ବଧ ପରେ ବିଶ୍ୱାମିତ୍ର ନିଜ ଶିଷ୍ୟମାନଙ୍କୁ ମରୁଭୂମିରୁ ଏକ ଅନୁପମ ଉର୍ବର ଦେଶଆଡ଼କୁ ନେଇଗଲେ । ସେ ଦେଶଟି କେଉଁ ରାଜାଙ୍କର ବୋଲି ପ୍ରଶ୍ନ କଲେ ରାମ । ଏହାର ଉତ୍ତରରେ କମ୍ବନ ବିଶ୍ୱାମିତ୍ରଙ୍କ ମୁହଁରେ ଏକ ନାଟକୀୟ ଉପାଖ୍ୟାନ ବର୍ଣ୍ଣନା କରିବାର ସୁଯୋଗ ଲାଭ କରିଛନ୍ତି ।

ଏକଦା ଏହି ରାଜ୍ୟ ଜଣେ ପ୍ରତାପଶାଳୀ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ଏହି ରାଜାଙ୍କ ନାମ ଥିଲା ମହାବଳୀ । ନିଜର ଅପ୍ରମିତ ପରାକ୍ରମଦ୍ୱାରା ସେ ସ୍ୱର୍ଗ ଓ ମର୍ତ୍ତ୍ୟକୁ ନିଜର କର୍ତ୍ତୃତ୍ୱାଧୀନ କରିପାରିଥିଲେ । ନିଜ ଶକ୍ତିର ଅଭିବୃଦ୍ଧି ପାଇଁ ଏକଦା ସେ ଏକ ଯଜ୍ଞର ଆୟୋଜନ କଲେ । ଏହା ଏପରି ଯଜ୍ଞ ଥିଲା ଯାହା ଦେବତାମାନେ ମଧ୍ୟ କେବେ ସମ୍ପନ୍ନ କରି ପାରିନଥିଲେ । ମହାବଳୀ ସାଧୁସନ୍ଥମାନଙ୍କ ଦାୟିତ୍ୱରେ ରାଜ୍ୟଭାର ଅର୍ପଣ କରି ଏହି ମହାନ ଉପଚାରରେ ଲାଗିପଡ଼ିଲେ । ଦେବତାମାନେ ଯେତେବେଳେ ମହାବଳୀଙ୍କ ଯଜ୍ଞ ବିଷୟରେ ଜାଣିବାକୁ ପାଇଲେ, ସେମାନେ ବିଷ୍ଣୁଙ୍କ ନିକଟରେ ପହଞ୍ଚି ଏ ଯଜ୍ଞକୁ ଅସଫଳ କରିବାକୁ ପ୍ରାର୍ଥନା କଲେ । ସେମାନଙ୍କର ଭୟ ଥିଲା—ମହାବଳୀ ଏହି ଯଜ୍ଞ ସମ୍ପନ୍ନ କରି ଅମାପ ଶକ୍ତିର ଅଧିକାରୀ ହୋଇଯିବେ । ଦେବତା ମାନଙ୍କ ପ୍ରାର୍ଥନାକୁ ଅନୁମୋଦନ କଲେ ବିଷ୍ଣୁ ।

ବିଶାଳ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ବାମନରୂପେ ଜନ୍ମଗ୍ରହଣ କଲେ । କ୍ଷୁଦ୍ର ମଞ୍ଜି ଭିତରେ ବିଶାଳ ବରଗଛ ଲୁଚି ରହିଲା ପରି, ଏହି ବାମନ ଭିତରେ ଲୁଚି ରହିଥିଲେ ଅସୀମ ସତ୍ତା ।

ସମସ୍ତ ଜ୍ଞାନ ଓ ବୁଦ୍ଧିରେ ପାରଦର୍ଶିତା ଅର୍ଜନ କଲେ ବାମନ । ତାଙ୍କ ଅନ୍ତିହିକୁ ଆଲୋକିତ କଲା ଧ୍ୟାନ । ପବିତ୍ର ଉପବୀତ ଧାରଣ କରି, ମନ୍ତ୍ର ଉଚ୍ଚାରଣ କରି ତଥା ଆଙ୍ଗୁଳାରେ ଜ୍ୱଳନ୍ତ କାଷ୍ଠ ନେଇ ବାମନ ମହାବଳୀଙ୍କ ରାଜ ଦରବାରରେ ପ୍ରବେଶ କଲେ । ମହାବଳୀ ତାଙ୍କୁ ଅତି ସମ୍ମାନର ସହ ସ୍ୱାଗତ କଲେ ଏବଂ ତାଙ୍କର ଆଗମନଦ୍ୱାରା ସେ ଅତ୍ୟନ୍ତ ଆନନ୍ଦିତ ବୋଲି କହିଲେ ।

ରାଜା ପ୍ରଶ୍ନ କଲେ : 'ମୁଁ ଆପଣଙ୍କର କି' ସେବା କରିପାରେ, ବ୍ରାହ୍ମଣ ?' ବାମନ ଉତ୍ତର ଦେଲେ, 'ମୋର ତିନପାଦ ଭୂମି ଆବଶ୍ୟକ, ଯଦି ଅଛି, ମୋତେ ତାହା ଦାନ କରନ୍ତୁ ।' 'ତଥାସ୍ତୁ' କହିଲେ ରାଜା । କିନ୍ତୁ ରାଜାଙ୍କ ମନ୍ତ୍ରୀ ଓ ଗୁରୁ ଶୁକ୍ର, ରାଜାଙ୍କୁ ବାଧା ଦେଇ କହିଲେ, 'ହେ ମହାରାଜ ! ଏ ବ୍ରାହ୍ମଣଙ୍କର ବେଶଭୂଷା ଅତୀବ ପ୍ରତାରଣାପୂର୍ଣ୍ଣ ମନେ ହେଉଚି । ତାଙ୍କୁ ଆପଣ ସାମାନ୍ୟ ବାମନ ବୋଲି ମନେ କରନ୍ତୁ ନାହିଁ । ଏ ହେଉଛନ୍ତି ସେ, ଯେ ବହୁବର୍ଷ ପୂର୍ବେ ସମଗ୍ର ବ୍ରହ୍ମାଣ୍ଡ ଓ ତାର ବହିର୍ଭୂତ ସମସ୍ତ ସତ୍ତାକୁ ଉଦରସ୍ଥ କରିଥିଲେ । ଏଣୁ ସାବଧାନ !'

'ତା'ହେଲେ ଭାବିକଅ, ମୁଁ ସେଇ ଈଶ୍ୱରଙ୍କ ପ୍ରସାରିତ ହାତରେ ମୋର ଦାନ ଅର୍ପଣ କରି ପୁଣ୍ୟ ଅର୍ଜନ କରିବି ।' କହିଲେ ରାଜା ମହାବଳୀ । ଏହା ଥିଲା ମହାବଳୀଙ୍କ ଆଦର୍ଶ, ଯେ ଅକୁଣ୍ଠ ଚିତ୍ତରେ ଅତି ଆନନ୍ଦରେ, ମାଗୁଥିବା ଲୋକଙ୍କ ଆଞ୍ଜୁଳାକୁ ଦାନରେ ହିଁ ପୂର୍ଣ୍ଣ କରି ଦେଉଥିଲେ ।

ମହାବଳୀଙ୍କ ମୁହଁରେ କାବ୍ୟର ଅନୁପମ ଶୈଳୀ ଓ ଅଦ୍ୱିତୀୟ ପ୍ରଗାଢ଼ତା (ଯାହା ଅନୁବାଦରେ ପ୍ରକାଶ କରିବା ଅସମ୍ଭବ) ପରିସ୍ଫୁଟନ କରିଛନ୍ତି କମ୍ବନ :

ମୃତ କେବେ ନୁହନ୍ତି ତ
ମୃତ;
କିନ୍ତୁ
ମୃତ ଖାଲି ସେଇମାନେ
ଯେଉଁମାନେ
ବଞ୍ଚିଥାନ୍ତି
ହାତ ପ୍ରସାରଣ କରି
ମାଗିଥାନ୍ତି ଭିକ୍ଷା

ତମେ କି
ଜାଣନା ବନ୍ଧୁ !
ଭିକ୍ଷା ଦେବା ଲୋକ
ମୃତ ନୁହେଁ କେବେ,
ବଞ୍ଚେ ସିଏ ଚିରଦିନ
ତାର ମୃତ୍ୟୁ ପରେ ।

ଏପରି କହି ମନ୍ତ୍ରୀଙ୍କ ଉପଦେଶକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ମହାବଳୀ ଏବଂ ବାମନଙ୍କୁ ତିନିପାଦ ଭୂମି ମାପି ନେଇଯିବାକୁ କହିଥିଲେ । ସେକାଳରେ କୌଣସି ରେଜିଷ୍ଟ୍ରେସନ ଅଫିସ ନଥିବାରୁ ଦାତାମାନେ ଦାନଗ୍ରହଣକାରୀଙ୍କ ହାତରେ ପାଣିଢାଳି ନିଜ ସମ୍ପତ୍ତିର ଅଧିକାର ପ୍ରଦାନ କରୁଥିଲେ ।

ଅନାଦି ଈଶ୍ୱର, ତାଙ୍କର ଖର୍ବକାୟ ହାତ ମହାବଳୀଙ୍କ ଦାନ ଗ୍ରହଣ ପାଇଁ ପ୍ରସାରଣ କଲେ । ଯେଉଁ ମୁହୂର୍ତ୍ତରେ ବଳୀଙ୍କ ଜଳ ତାଙ୍କର ହାତ ସ୍ପର୍ଶ କଲା, ସେହି ମୁହୂର୍ତ୍ତରୁ ଧୀରେ ଧୀରେ ବଢ଼ିବାକୁ ଲାଗିଲେ ବାମନ । ଦର୍ଶକମାନେ ମୁଗ୍ଧ ନୟନରେ ବାମନଙ୍କ ଶରୀରର ସାଧାରଣ ଉଚ୍ଚତା ପର୍ଯ୍ୟନ୍ତ ବଢ଼ିବାର ଦେଖିଲେ । କିନ୍ତୁ ଅବଲୀଳାକ୍ରମେ ଏହା ବଡ଼ ହୋଇ ସ୍ୱର୍ଗ ସ୍ପର୍ଶକଲା ଏବଂ ସ୍ୱର୍ଗରୁ ଆହୁରି ଉଚ୍ଚକୁ ଉଠିଲା । ଦର୍ଶକମାନେ ଭୟଭୀତ ହୋଇ ଉଠିଲେ ।

ଭୂମିପରେ ପାଦ ବଢ଼ି ବଢ଼ି
ବ୍ୟାପିଗଲା ସମସ୍ତ ପୃଥିବୀ
ପୃଥିବୀ ଦିଶିଲା ଶ୍ରେଷ୍ଠ
ପାଦ ତଳେ ରହି;
ଧୀରେ ଧୀରେ ପାଦ ବଢ଼ି
ଅବରୁଦ୍ଧ କରିଲା ଆକାଶ
ଚତୁର୍ଦ୍ଦିଗେ ବ୍ୟାପିଗଲା
ତା'ସହିତ ସମସ୍ତ ବିକାଶ;
କେଉଁଠି ପାରିବ ରହି
ନାହିଁ ଟିକେ କେଉଁଠି ବି ଜାଗା
ପାଦ ଏଣୁ ଫେରିଆସେ
କେଉଁଠାରେ ନାହିଁ ତାର ସ୍ଥାନ ।

ବିଶ୍ୱାମିତ୍ରଙ୍କ ଏ ଉପାଖ୍ୟାନର ବର୍ଣ୍ଣନା କରିବାର ଉଦ୍ଦେଶ୍ୟ ଥିଲା : ମହାବଳୀଙ୍କ ସମସ୍ତ ଅହଂକୁ ଧୂଳିସାତ କରିବା ପାଇଁ ବାମନଙ୍କ ପାଦ ମହାବଳୀଙ୍କ

କ୍ଷୀର ଉପରେ ରହିଥିଲେ ଓ ତାଙ୍କୁ ଘୃଣି ଦେଉଥିଲେ । ଈଶ୍ୱରଙ୍କ ଚରମ ଅସ୍ତିତ୍ୱରେ ବିଲୀନ ହୋଇଯାଇଥିଲେ ମହାବଳୀ ।

ପ୍ରତ୍ୟେକ ଉପାଖ୍ୟାନର ଏକ କୋମଳ ପରିଶେଷ ପରିବେଷଣ କରିବା ଥିଲା କମ୍ବନଙ୍କ ସୌନ୍ଦର୍ଯ୍ୟାନୁଭୂତିର ଚରମ ବିଶେଷତ୍ୱ । ଏଣୁ ପରିଶେଷରେ କବି ଲେଖିଛନ୍ତି : ମହାବଳୀଙ୍କୁ ନିଜ ଅସ୍ତିତ୍ୱରେ ବିଲୀନକରି ଏବଂ ତାଙ୍କର ରାଜ୍ୟକୁ ଦେବତାମାନଙ୍କୁ ଉପହାର ସ୍ୱରୂପ ଅର୍ପଣ କରି କ୍ଷୀରସ୍ଥାପଥରେ ଅବସ୍ଥିତ ତାଙ୍କ ଶୟନକକ୍ଷରେ ବିଶ୍ରାମ ପାଇଁ ପ୍ରବେଶ କରିଛନ୍ତି ଈଶ୍ୱର ।

କ୍ଷୀର ସମୁଦ୍ରରେ ଯେବେ
ଶୋଇଗଲେ ବିଷ୍ଣୁ ବିଶ୍ରାମ ଇଚ୍ଛାରେ
ଲକ୍ଷ୍ମୀ ତାଙ୍କ ପାଟରାଣୀ
ଛୁଇଁଲେ ତାଙ୍କର ପାଦ
କୋମଳ ହାତରେ;
ସାରା ବ୍ରହ୍ମାଣ୍ଡକୁ ବ୍ୟାପି
ଯେଉଁପାଦ ହୋଇଥିଲା କଠିନ କର୍କଶ
ମୁହୂର୍ତ୍ତିକେ କରିଲା ରଙ୍ଗୀନ
ରାଣୀଙ୍କର ନରମ ପରଶ ।

ଏହିପ୍ରକାର କୋମଳତ୍ୱ ପରିବେଷଣଦ୍ୱାରା କବି 'ଅନନ୍ତ ଶକ୍ତି' ଏବଂ 'ଅନନ୍ତ ଅନୁକମ୍ପା' ମଧ୍ୟରେ ଥିବା ବିରୋଧାଭାସକୁ ଅତି ମାର୍ମିକ ଭାବେ ପରିବ୍ୟକ୍ତ କରିବାରେ ସଫଳ ହୋଇଛନ୍ତି ।

ରାମଙ୍କ ପ୍ରେମ

ଏହିସବୁ ଉପାଖ୍ୟାନମାନ ଶୁଣି ରାମ ଓ ଲକ୍ଷ୍ମଣ ବିଶ୍ୱାମିତ୍ରଙ୍କ ସହ ଶେଷରେ ମିଥିଲାରେ ପହଞ୍ଚିଲେ । ଏଠାରେ ରାମ ଓ ସୀତାଙ୍କ ବିବାହ ଅନୁଷ୍ଠିତ ହୋଇଥିଲା ।

ବାଲ୍ମୀକି 'ରାମାୟଣ'ରେ ରାମ ଓ ସୀତା ସେମାନଙ୍କ ବିବାହ ପୂର୍ବରୁ ପରସ୍ପରକୁ କେବେହେଲେ ଦେଖି ନଥିଲେ ବୋଲି ବର୍ଣ୍ଣନା ଅଛି । ବାସ୍ତବିକ୍ ବାଲ୍ମୀକିଙ୍କ ସୀତା ଅନୁସୂୟାଙ୍କୁ ନିଜର ବିବାହ ପ୍ରସଙ୍ଗ ବର୍ଣ୍ଣନା କଲାବେଳେ ମାତ୍ର ଛଅ ବର୍ଷ ବୟସରେ ତାଙ୍କର ବିବାହ ହୋଇଥିଲା ବୋଲି ଉଲ୍ଲେଖ କରିଛନ୍ତି । ଏଥିରୁ ଅନୁମେୟ, ସେ କାଳରେ ରୋମାଞ୍ଚକର ପ୍ରେମ ବର୍ଣ୍ଣନା କରିବାର ସୁଯୋଗ ଥିଲା କମ୍ ।

କମ୍ବନ କିନ୍ତୁ ଅତି ଚମତ୍କାର ନାଟକୀୟରେ ଦମ୍ପତିଙ୍କ ରୋମାଞ୍ଚକର ପ୍ରେମର ଦୃଶ୍ୟ ଉପସ୍ଥାପନ କରିଛନ୍ତି । ତେବେ ସେମାନଙ୍କ ବିବାହ ପୂର୍ବରୁ, ଏପରିକି ଶିବଧନୁ ଭାଙ୍ଗିବା ପୂର୍ବରୁ ପ୍ରାପ୍ତ ବୟସରେ ପରସ୍ପରକୁ ପ୍ରେମ କରିଛନ୍ତି ବୋଲି ଉଲ୍ଲେଖ କରିଛନ୍ତି କବି ।

ସୀତାଙ୍କର ପୂର୍ଣ୍ଣ ଲାବଣ୍ୟ ବର୍ଣ୍ଣନା କରିବାକୁ ଯାଇ କମ୍ବନ ତାଙ୍କର ସୌନ୍ଦର୍ଯ୍ୟଜ୍ଞାନର ସମସ୍ତ ଚମତ୍କାରିତା ପ୍ରଦର୍ଶନ କରିଛନ୍ତି । କମ୍ବନଙ୍କ ମତରେ, ଏପରିକି ସୀତାଙ୍କର ଜନ୍ମ ପୂର୍ବରୁ ସୌନ୍ଦର୍ଯ୍ୟର ଅଧିଷ୍ଠାତ୍ରୀ ଦେବୀ ଉତ୍କର୍ଷ ପ୍ରାପ୍ତ କରିଥିବାର ମନେ ହୁଏ । ସେ ନିଜେ 'ସୌନ୍ଦର୍ଯ୍ୟର କାରଣ' ଅପେକ୍ଷା ନିଜେ 'ସୌନ୍ଦର୍ଯ୍ୟ' ରୂପେ ପ୍ରସନ୍ନ ହୋଇଥିଲେ । ଯୁଗ ଯୁଗ ଧରି ସୃଷ୍ଟିର ବହୁବିଧ ସୌନ୍ଦର୍ଯ୍ୟକୁ ଏକତ୍ର କରି ସେ ସମସ୍ତ ସୌନ୍ଦର୍ଯ୍ୟରେ ନିଜକୁ ଆଭୂଷିତ କରି ପ୍ରତ୍ୟକ୍ଷ ହୋଇଛନ୍ତି ଦେବୀ । ସୌନ୍ଦର୍ଯ୍ୟର ସମସ୍ତ କୋମଳତାକୁ ନିଜସ୍ୱ କରି ଦେବୀ ଅନୁଭବ କରିଛନ୍ତି ଯେ ସୌନ୍ଦର୍ଯ୍ୟରେ ଆଉ କୌଣସି ନୂତନତ୍ୱ ନାହିଁ, ଯାହାକୁ ନେଇ ସେ ଅଧିକ ବିବର୍ଦ୍ଧିତ ହୋଇପାରିବେ । କିନ୍ତୁ ଆଶ୍ଚର୍ଯ୍ୟର କଥା, ସୀତା ଜନ୍ମ ହେବାମାତ୍ରେ ଏକ ଅପୂର୍ବ ଲାବଣ୍ୟରେ ବିକଶିତ ହେଲେ ସୌନ୍ଦର୍ଯ୍ୟ ଏବଂ ପୂର୍ବାପେକ୍ଷା ଅଧିକ ଔଜ୍ଜ୍ୱଲ୍ୟରେ ଦୀପ୍ତ ହେଲେ ।

ବିଶ୍ୱାମିତ୍ର ଓ ଲକ୍ଷ୍ମଣଙ୍କ ସହ ମିଥିଳା ନଗର ପରିଭ୍ରମଣ କରିବା ସମୟରେ ରାମ ରାଜପ୍ରାସାଦର ସଂଲଗ୍ନ ପଶ୍ଚାତରେ ସୀତାଙ୍କ ସୌନ୍ଦର୍ଯ୍ୟର ଏକ ପ୍ରତିବିମ୍ବ ଦେଖିବାକୁ ପାଇଥିଲେ । ସେ ପ୍ରତିବିମ୍ବରୁ ଯେତେବେଳେ ରାମ ଦୃଷ୍ଟି ଫେରାନ୍ତି, ସୀତାଙ୍କୁ ରାଜପ୍ରାସାଦର ବାତାୟନ ସମୀପରେ ଠିଆ ହୋଇଥିବାର ଦେଖନ୍ତି । ତତ୍‌କ୍ଷଣାତ୍ ଉଭୟଙ୍କ ଚକ୍ଷୁର ଉନ୍ମୀଳନ ସଂଘଟିତ ହୁଏ । ଉଭୟଙ୍କ ପ୍ରେମର ଦୃଶ୍ୟ ଅତି ମାର୍ମିକଭାବେ ବର୍ଣ୍ଣନା କରିଛନ୍ତି କମ୍ବନ :

ଆଖି ଆଖିରେ ମିଶିଲା ଦୁଇ ଆଖି  
ଦୁହେଁ ଦୁହିଁଙ୍କ ଗ୍ରହି ଗଲେ ରହି  
ତାଙ୍କ ହୃଦୟେ ଆବେଗ ହେଲା ସ୍ଥିର  
ରାଜକନ୍ୟାକୁ ଦେଖିଣ ରାଜପୁତ୍ର  
ହୋଇଗଲେ ଚଞ୍ଚଳ  
ରାଜକୁମାରଙ୍କୁ ଦେଖି ରାଜକନ୍ୟା  
ହୋଇଗଲେ ବିଭୋର ।

ଠିକ୍ ଏହି ସମୟରେ ବିଶ୍ୱାମିତ୍ର ଓ ଲକ୍ଷ୍ମଣ ରାମଙ୍କ ପଛେ ପଛେ ତାଙ୍କ ନିକଟରେ ପହଞ୍ଚିଲେ । ବିହ୍ୱଳ ରାମଙ୍କ ବିହ୍ୱଳତା ଭାଙ୍ଗିଗଲା ଓ ନିଜର ଅନିଚ୍ଛା ସତ୍ତ୍ୱେ

ସେମାନଙ୍କ ସହ ରାଜା ଜନକଙ୍କ ରାଜ ପ୍ରାସାଦରେ ପହଞ୍ଚିଲେ । ସୀତାଙ୍କ ତନୁ ମନ ତଥା ତାଙ୍କର ସମସ୍ତ ଆକର୍ଷଣ ରାମଙ୍କ ଅନୁଧାବନ କରୁଥିଲେ ।

ରାମଙ୍କ ମୂର୍ତ୍ତି ସୀତାଙ୍କ ଦୃଷ୍ଟିରୁ ଯେତେବେଳେ ଅପସରି ଗଲା, ସେତେବେଳେ ତାଙ୍କ ମନ ଉଦାସୀନତା ଓ ଅନିଶ୍ଚିତତାରେ ଘୂରିବାକୁ ଲାଗିଲା ।

ଚନ୍ଦ୍ରୋଦୟ ହେବାରୁ ତାଙ୍କ ମନ ରାମଙ୍କ ସାନ୍ନିଧ୍ୟ ପାଇଁ ବ୍ୟାକୁଳ ହୋଇ ଉଠିଲା । ପଦ୍ମଫୁଲ ଶୋଭିତ ଶଯ୍ୟାରେ ସେ ମଉଳିବାକୁ ଲାଗିଲେ । ତାଙ୍କର ଶୀତଳ ଚନ୍ଦନଚର୍ଚ୍ଚିତ ଅବୟବ ତରଳ ନିଆଁ ପରି ଜଳିବାକୁ ଲାଗିଲା । ଏହି ସବୁ ଦୁଃଖାନନ୍ଦ ଚିତ୍ରଣ କଲାବେଳେ କମ୍ବନ ସୀତାଙ୍କ ମନ ଭିତରେ ପ୍ରବେଶ କରି ସୀତାଙ୍କ ମନର ପ୍ରକୃତ, ବାସ୍ତବ ଅବସ୍ଥା ବର୍ଣ୍ଣନା କରି ପ୍ରଶ୍ନଟିଏ ପଚାରିଛନ୍ତି : 'ପ୍ରେମଜନିତ ବ୍ୟାଧି ପାଇଁ କୌଣସି ଔଷଧଜନିତ ଆରୋଗ୍ୟ ଅଛି କି ?'

ଇତ୍ୟବସରେ ରାଜନଗରେ ଜନକଙ୍କ ରାଜପ୍ରାସାଦରେ ପହଞ୍ଚିଲା ପରେ ଉପର ପ୍ରକୋଷ୍ଠରେ ରାମଙ୍କ ପାଇଁ ଶୟନର ବନ୍ଦୋବସ୍ତ କରାହୋଇଥିଲା । ରାମଙ୍କୁ ତାଙ୍କ କକ୍ଷରେ ବିଦାୟ ଦେଇ ନିମ୍ନ ମହଲାର ଏକ ପ୍ରକୋଷ୍ଠରେ ଶୟନ କରିଥିଲେ ବିଶ୍ୱାମିତ୍ର ଓ ଲକ୍ଷ୍ମଣ । ପ୍ରେମ ଅନୁଭୂତିରେ ରାମ ପୂରାପୂରି ଅଙ୍କ ଥିଲେ । କିନ୍ତୁ ସୀତାଙ୍କ ସ୍ମୃତିଚାରଣ କଲାବେଳେ, ଅନ୍ଧାର ଘୋଟି ଆସିଥିଲା ଏବଂ ତାଙ୍କ ଚିନ୍ତାରେ ଏକ ଅପୂର୍ବ ସଚେତନତା ଆଣି ଦେଇଥିଲା । ଚନ୍ଦ୍ର ଉଦୟ ହେବା ମାତ୍ରେ ତାଙ୍କର ଅବସ୍ଥା ଅସହ୍ୟ ହୋଇଉଠିଲା । ସେ କ'ଣ ଏକାକୀ ? 'ନାଁ, ନୁହେଁ' ଲେଖିଛନ୍ତି କମ୍ବନ । ନିସ୍ତବ୍ଧତା, ଅନ୍ଧକାର, ଜହ୍ନ, ମଦନର ଯନ୍ତ୍ରଣାଦଗ୍ଧ ବ୍ୟକ୍ତିସତ୍ତା ତଥା ତାଙ୍କର ପ୍ରିୟ ସୀତା— ଏ ସମସ୍ତେ ଥିଲେ ତାଙ୍କର ସାଥୀ, ସହଚର । ଖେଦୋକ୍ତି ପ୍ରକାଶ କରି ରାମ ଗାଇଛନ୍ତି :

ତାଙ୍କର ସେ କଟିଦେଶ
ଦିଶଇ ରଥ ପରାୟ
ବେନି ଆଖିର କଟାକ୍ଷ
ଉଚ୍ଚ ଉଚ୍ଚ କୁଚ ଯୁଗଳ
ଆଃ ! ସେ ଅଧରର ସ୍ମିତ ହସ
ନିର୍ଦ୍ଦୟ ସେ ପ୍ରେମର ଈଶ୍ୱର
ଲୋଡ଼େ କମ୍ପା ଏତେ
ଉପଚାର ?

ଏହିସବୁ ଦୁଃଖଦ ଚିନ୍ତା ଭିତରେ ବହୁ ଦୀର୍ଘ ମନେ ହେଉଥିବା ରାତ୍ରିର ବିଳମ୍ବିତ ପ୍ରହର ଅତିକ୍ରାନ୍ତ କରନ୍ତି । ଏହାପରେ ଶୋଇଯାନ୍ତି ରାମ । ବାଲ୍ମୀକି

'ରାମାୟଣ'ରେ ରାମଙ୍କୁ ଈଶ୍ୱର ବୋଲି ପରିକଳ୍ପନା କରାଯାଇ ନାହିଁ । କିନ୍ତୁ କମ୍ବନ ରାମଙ୍କୁ ଈଶ୍ୱର ବୋଲି ସ୍ୱୀକାର କରି ଈଶ୍ୱରଙ୍କ ଏତାଦୃଶ ମାନବୀୟ ଯନ୍ତ୍ରଣା ଦେଖି ଅସ୍ଥିର ହୋଇ ପଡ଼ିଛନ୍ତି । ପ୍ରେମ-ନିର୍ଜରିତ ରାମଙ୍କଦ୍ୱାରା ପ୍ରେରଣା ଲାଭ କରି କମ୍ବନ ଲେଖିଛନ୍ତି : ମଣିଷଙ୍କ ପ୍ରତି ଥିବା ଅପାର ଅନୁକମ୍ପା ହେତୁ ଈଶ୍ୱର ପୃଥିବୀ ପୃଷ୍ଠରେ ଜନ୍ମଗ୍ରହଣ କରନ୍ତି ଏବଂ କାଳ ଓ ସ୍ଥାନ ଜନିତ ପାର୍ଥିବ ନୀତି ନିୟମ ଦ୍ୱାରା ନିଜକୁ ବନ୍ଦୀ କରି ଯାବତୀୟ ଦୁଃଖ ଓ କ୍ଲେଶ ମାଧ୍ୟମରେ ମଣିଷକୁ ଉଦ୍ଧାର କରନ୍ତି । ପ୍ରାତଃ କାଳରେ ନିଦ୍ରାଭଙ୍ଗ ଜନିତ ରାମଙ୍କ ସୌନ୍ଦର୍ଯ୍ୟକୁ ଅତି ସୁନ୍ଦରଭାବେ ବର୍ଣ୍ଣନା କରିଛନ୍ତି କମ୍ବନ :

ଧର୍ମିକ ସୂର୍ଯ୍ୟ ଚଢ଼ି
　　ନିଜସ୍ୱ ରଥରେ
ଆଲୋକର ଚକମାନ
ଶୋଭିପାଏ ଯାରେ
ପଶ୍ଚିମ-ସାଗରେ ବୁଡ଼ି
　　ଉଠନ୍ତି ପୂର୍ବରେ ;
ଶୀତଳ କିରଣ ତାଙ୍କ
　　ଧୀରେ ଛୁଏଁ ରାମଙ୍କ ଚରଣ
ନିଦ୍ରାରୁ ଉଠନ୍ତି ବସି
　　ବୀର ରଘୁବୀର
ଶେଷହୁଏ ତାଙ୍କ ପାଇଁ
　　କଷ୍ଟକର ରାତିର ପ୍ରହର
ସେ ଆନନ୍ଦମୟ
　　ଯେ ସର୍ବଦା ଶୋଇଥାନ୍ତି
ଅନନ୍ତ ସମୁଦ୍ରେ
　　ସହସ୍ର ଉଜ୍ଜ୍ୱଳମୟ
ନିଜସ୍ୱ ଶେଯରେ,
ଆଜି କିନ୍ତୁ କି' ଦୁଃଖରେ
　　ମ୍ରିୟମାଣ
କାଳ ଏବଂ ସ୍ଥାନ ପରି
　　ସଂସାରର ସଙ୍କୃତ ଶଯ୍ୟାରେ !

ଏହି ଅନୁପମ ପଦ୍ୟ ମୌଳିକ ରଚନା ପାଠକଲେ ମନେହେବ ଯେପରି ଏହା ସହସ୍ର ସମୁଦ୍ରଙ୍କ ଧ୍ୱନିରେ ଧ୍ୱନିମୟ । ଏ କାବ୍ୟର ଲାଳିତ୍ୟ ଏତେ ମଧୁମୟ,

ଏହାର ଧ୍ୱନି ଏତେ ସାନ୍ଦ୍ର—ଏହା ପାଠକଙ୍କୁ ମନ୍ତ୍ରମୁଗ୍ଧ କରିଦିଏ । ବହୁଳ ପାଠକ ଏହାକୁ ପାଠ କରି ସଂସାରର ସମସ୍ତ କାର୍ଯ୍ୟ କାରଣର ବନ୍ଦୀଶାଳାରୁ ମୁକ୍ତ ହୋଇଯାଏ ।

## ଶିବଧନୁ ଭଗ୍ନ

ମିଥିଳାର ରାଜା ଜନକ ତାଙ୍କ ନିକଟରେ ଥିବା ଶିବଧନୁରେ ଗୁଣ ଚଢ଼େଇ ପାରୁଥିବା ଯୁବକକୁ ନିଜର କନ୍ୟା ସୀତାଙ୍କ ବିବାହ ଦେବା ଲାଗି ପ୍ରତିଜ୍ଞା କରିଥିଲେ । କିନ୍ତୁ ବହୁ ବୀର ରାଜା ଚେଷ୍ଟାକରି ସଫଳ ହୋଇ ପାରିନଥିଲେ ।

ଋଷି ବିଶ୍ୱାମିତ୍ର ଜନକଙ୍କୁ ଶିଷ୍ୟ ରାମଙ୍କର ଅଦ୍ଭୁତପୂର୍ବ ଧନୁର୍ବିଦ୍ୟା ବିଷୟ ଉଲ୍ଲେଖ କରି ତାଙ୍କୁ ଥରେ ଏ ଦିଗରେ ଚେଷ୍ଟା କରିବାକୁ ସୁଯୋଗ ଦେବା ଲାଗି ଅନୁମତି ମାଗିଲେ ।

ଜନକ ପ୍ରଥମେ ରାମଙ୍କୁ ଏବଂ ପରେ ବିଶାଳ ଶିବଧନୁକୁ ଚାହିଁଲେ । ନିରାଶାରେ ଭାଙ୍ଗି ପଡ଼ିଲେ ରାଜା—ଅନିଶ୍ଚିତ ଆଶଂକାରେ ଆଶଙ୍କିତ ହୋଇଗଲେ । ତାଙ୍କର ଏ ନିଷ୍ଠୁର ପ୍ରତିଜ୍ଞା ପାଇଁ ନିଜକୁ ଧିକ୍କାର କରିବାକୁ ଲାଗିଲେ ତଥା ସୀତାଙ୍କ ଭବିଷ୍ୟତ ନେଇ ଚିନ୍ତିତ ଜଣାପଡ଼ିଲେ ।

ଏହି ସମୟରେ ରାମଙ୍କ ଆଡ଼କୁ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ ବିଶ୍ୱାମିତ୍ର ।

ଉଠିଲେ ରାମଚନ୍ଦ୍ର
'ଜିହ୍ୱା ପରି ଜ୍ୱଳନ୍ତ ଅଗ୍ନିରେ
ମିଶିବାକୁ ଘିଅ ସହି
ହୋମକୁଣ୍ଡେ ସେଠାରେ ହବିର ;
'ଭାଙ୍ଗିଗଲା ଶିବଧନୁ'
ଦେବଗଣ ହୁଅନ୍ତି ହରଷ
ଋଷିମାନେ
ଢାଳଯାନ୍ତି ଆଶିଷର ଧାରା ।
ମେରୁ ସମ ଶିବଧନୁ
ଉଠାଇଲେ କେଡ଼େ ସହଜରେ
ସତେଅବା ଉଠାଇଲେ
ଫୁଲହାର ଦେବା ପାଇଁ
ସୀତାଙ୍କ ଗଳାରେ ।
ନିର୍ନିମେଷେ ଚାହିଁଥିଲେ
ଦର୍ଶକମଣ୍ଡଳୀ

ଦୃଶ୍ୟତ ହେଲାନି ତାଙ୍କୁ
କେଉଁପରି ପାଦେ ରୁପିଧର
କେତେ ନିପୁଣତା ସହ
ଟାଣିଲେ ଧନୁକୁ
କିନ୍ତୁ ତାଙ୍କୁ ଦେଖାଗଲା
ଧନୁ ତାଙ୍କ ଧରିବା ଦୃଶ୍ୟକୁ
ଏବଂ ଖାଲି ଶୁଣାଗଲା
ଭାଙ୍ଗିଗଲା କେଉଁପରି
ଶିବଙ୍କର ଧନୁ ।

## ସନ୍ଦେହ ମୋଚନ

ଅନ୍ତଃପୁରରେ ଥିବାରୁ ସୀତା ଶିବଧନୁ ଭାଙ୍ଗିବା ବିଷୟ ଜାଣି ପାରିନଥିଲେ । କିନ୍ତୁ ତାଙ୍କୁ ପ୍ରେମରେ ଅଧୀର କରିଥିବା ଅଜଣା ଯୁବକଙ୍କ ପଛଚିତ୍ର ତାଙ୍କ ମନରେ ଦୃଢ଼ୀଭୂତ ହୋଇ ରହିଥିଲା ।

ରାମଙ୍କ ସାନ୍ନିଧ୍ୟ ପାଇଁ ସୀତାଙ୍କ ମନ ବ୍ୟାକୁଳ ହୋଇ ଉଠୁଥିବା ବେଳେ ଦାସୀ ନୀଳିମା ତାଙ୍କ ନିକଟରେ ଆସି ପହଞ୍ଚିଥିଲା । ଦାସୀର ସୁନାର କର୍ଣ୍ଣଭୂଷଣ ଚକ୍‌ଚକ୍ କରୁଥିଲା ଏବଂ ସୂର୍ଯ୍ୟ କିରଣରେ ତାହା ଇନ୍ଦ୍ରଧନୁର ବର୍ଣ୍ଣନା ସୃଷ୍ଟି କରୁଥିଲା । ତା'ର ଶାଢ଼ୀ ଥିଲା ଅସଂଯତ ଓ କୁନ୍ତଳ ଅବିନ୍ୟସ୍ତ । ଦାସୀ ଏତେ ଆନନ୍ଦିତ ଥିଲା ଯେ, ସେ ଗୀତ ଗାଉଥିଲା ଏବଂ ଆନନ୍ଦର ଆତିଶଯ୍ୟରେ ସୀତାଙ୍କୁ ସମ୍ମାନ ପ୍ରଦର୍ଶନ କରିବାକୁ ଭୁଲି ଯାଇଥିଲା । ଏପରିକି ଏ ଖୁସି ଖବର ଶୁଣାଇବାକୁ ଭୁଲି ବି ଯାଇଥିଲା ।

ସୀତା ନୀଳିମାକୁ ପ୍ରଶ୍ନକଲେ : 'ଆଜି ଏତେ ଖୁସି କାହିଁକି ? କୁହନା କ'ଣ ଖବର ?' ସୀତାଙ୍କ ପ୍ରଶ୍ନ ଶୁଣି ସଚେତନ ହୋଇଗଲା ଦାସୀ ଏବଂ କେଉଁପରି ରାମ ନାମକ ଜଣେ ରାଜପୁତ୍ର ଶିବଧନୁକୁ ଖେଳନା ପରି ଉଠାଇ ଭାଙ୍ଗିଦେଲେ ତାହା ବର୍ଣ୍ଣନା କଲା । ପୁନଶ୍ଚ କହିଲା—ଏ ହେଉଛନ୍ତି ଅଯୋଧ୍ୟାର ରାଜା ଦଶରଥଙ୍କ ପଦ୍ମ-ନେତ୍ର ପୁତ୍ର ରାମ । ତାଙ୍କ ସହ ଆସିଛନ୍ତି ତାଙ୍କ ଅନୁଜ ଲକ୍ଷ୍ମଣ ଓ ଋଷି ବିଶ୍ୱାମିତ୍ର । ରାମଙ୍କର ଏହି ଦୁଇ ସହଯାତ୍ରୀଙ୍କ ବିଷୟ ଶୁଣି ସୀତାଙ୍କର ଆଉ କୌଣସି ସନ୍ଦେହ ରହିଲା ନାହିଁ ଯେ, ଏ ହେଉଛନ୍ତି ସେଇ ଯୁବକ ଯେ' ତାଙ୍କ ହୃଦୟ ଜୟକରିଛନ୍ତି । ଏହି ନିଶ୍ଚୟତା ସୀତାଙ୍କ ଅଙ୍ଗରେ ଏକ ଅନୁପମ ପ୍ରଭାବ ବିସ୍ତାରକଲା । ତାଙ୍କର ଶିହରଣ ଏତେ ପ୍ରବଳ ହେଲା ଯେ, ତାଙ୍କ ଅଙ୍ଗ କମ୍ପିବାକୁ ଲାଗିଲା ଏବଂ ତାଙ୍କ କଟିର ସ୍ୱର୍ଣ୍ଣ ମେଖଳା ଦୁଇଖଣ୍ଡ ହୋଇ ଭାଙ୍ଗିଗଲା । ସୀତାଙ୍କ ହୃଦୟରେ ଯେଉଁ ପ୍ରେମର

ଭୂକମ୍ପ ଅନୁଭୂତ ହୋଇଛି କମ୍ବନ ତାର ପ୍ରତ୍ୟେକ ଗୋପନ କମ୍ପନକୁ ତାଙ୍କ ପଦ୍ୟରେ ରୂପାୟିତ କରିଛନ୍ତି ।

## ବିବାହ ନିମନ୍ତ୍ରଣ

ସୀତାଙ୍କୁ ପ୍ରତ୍ୟାଶାର ମଧୁସ୍ୱପ୍ନରେ ଗୁଡ଼ିଦେଇ କମ୍ବନ ପାଠକମାନଙ୍କୁ ରାଜା ଜନକଙ୍କ ନିକଟକୁ ନେଇ ଯାଇଛନ୍ତି । ଜନକଙ୍କ ଆନନ୍ଦ ଶିବଧନୁ ଭାଙ୍ଗିବାର ବିସ୍ଫୋରକ ଶବ୍ଦଠାରୁ ତୀବ୍ରତର ଥିଲା । ବିବାହ କାର୍ଯ୍ୟ ତତ୍‌କ୍ଷଣାତ୍ ଆରମ୍ଭ ହେବ ନା ଦଶରଥଙ୍କ ଆଗମନ ପରେ ଆରମ୍ଭ ହେବ—ବିଶ୍ୱାମିତ୍ରଙ୍କୁ ପ୍ରଶ୍ନକଲେ ଜନକ । ବିଶ୍ୱାମିତ୍ରଙ୍କ କହିବା ମୁତାବକ ଜନକ ଦଶରଥଙ୍କୁ ନିମନ୍ତ୍ରଣ କଲେ ।

## ମିଥିଳା ଯାତ୍ରା

ଦଶରଥ ଏବଂ ତାଙ୍କ ଅନୁଗାମୀମାନେ ମିଥିଳାର ଉପାନ୍ତରେ ପହଞ୍ଚିବା କ୍ଷଣି ଜନକ ତାଙ୍କୁ ନିଜର ଅନୁଚରଙ୍କ ସହ ପାଛୋଟି ଆଣିଲେ । ଏହାପରେ ରାମଙ୍କ ସହର ପରିକ୍ରମା ଲାଗି ଏକ ଶୋଭାଯାତ୍ରାର ଆୟୋଜନ କରାଗଲା । ନାନାଦି ଫୁଲ ଓ ଅଳଙ୍କାରରେ ବିଭୂଷିତ ହୋଇ ମିଥିଳା ନଗର ରଥରେ ପରିକ୍ରମା କଲେ ରାମ ।

ବିବାହ ମଣ୍ଡପରେ ଶୋଭାଯାତ୍ରା ଶେଷ ହେଲା । ଏଠାରେ ଅପେକ୍ଷମାଣ ଥିଲେ ଦୁଇ ଋଷି—ବଶିଷ୍ଠ ଓ ବିଶ୍ୱାମିତ୍ର । ରାମ ମଣ୍ଡପରେ ପ୍ରବେଶ କରି ଋଷିଙ୍କର ପାଦସ୍ପର୍ଶ ପୂର୍ବକ ପ୍ରଣିପାତ କଲେ । ରାମଙ୍କ ଗଳାରେ ଶୋଭିତ ହୀରାର ହାର ଝୁଲିପଡ଼େ ଓ ତାରି ଅପୂର୍ବ ଜ୍ୟୋତି ରାମଙ୍କ ନୀଳ ଶରୀର ସ୍ପର୍ଶକରେ । କବି ଏଠି ରଙ୍ଗର ବିରୋଧାଭାସଦ୍ୱାରା ଆକର୍ଷିତ ହୋଇପଡ଼ିଛନ୍ତି । ତାଙ୍କ ବର୍ଣ୍ଣନାରେ, ରାମ ଠିକ୍ ବିଦ୍ୟୁତ ଝଲମଲ ମେଘ ଖଣ୍ଡଟିଏ ଯିଏ ଋଷିଙ୍କ ପାଦର ଆକାଶରେ ଲମ୍ବି ରହିଥିଲେ ।

ଶବ୍ଦର ରଙ୍ଗ, ଚିତ୍ରକଳ୍ପର ଔଜ୍ଜ୍ୱଲ୍ୟ ଓ କ୍ଷୁଦ୍ରାତିକ୍ଷୁଦ୍ର ଘଟଣାର ବର୍ଣ୍ଣନା ଚାତୁର୍ଯ୍ୟଦ୍ୱାରା କମ୍ବନ ଯେଉଁ କାବ୍ୟ ସୃଷ୍ଟି କରିଛନ୍ତି, ତାହା କୌଣସି ସ୍ଥିର ଚିତ୍ର ନୁହେଁ, କିମ୍ବା ଗତିଶୀଳ ଚିତ୍ର ନୁହେଁ; ଏହାକୁ ମଧ୍ୟ ଶୈଳ୍ପିକ-ରଙ୍ଗବିଶିଷ୍ଟ ଚିତ୍ର କହି ହେବନି; ବାସ୍ତବିକ୍ ଏହା ଏକ ତ୍ରିସ୍ତ-ଆୟତନ ବିଶିଷ୍ଟ ନାଟକ ଯାହା ଆମ ସମ୍ମୁଖରେ ଅତି ଜୀବନ୍ତ ଭାବେ ଅଭିନୀତ ହେଉଛି ।

## ପ୍ରେମିକ ପ୍ରେମିକାଙ୍କ ମିଳନ

ସମସ୍ତ ଅତିଥି ଆସନ ଗ୍ରହଣ କଲାପରେ କନ୍ୟାଙ୍କୁ ଆଣିବା ପାଇଁ ଜନକଙ୍କୁ ନିର୍ଦ୍ଦେଶ ଦେଲେ ବଶିଷ୍ଠ ।

ସୀତା ଧୀରେ ଧୀରେ ପ୍ରବେଶ କଲାବେଳେ ତାଙ୍କ ଅଳଙ୍କାର ଆଭୂଷଣ ଭୂମି ଉପରେ ଅପୂର୍ବ ବର୍ଣ୍ଣାଳି ସୃଷ୍ଟି କରୁଥିଲା । ମନେ ହେଉଥିଲା—ଯେପରି ପୃଥିବୀ-ମାତା କାଳେ ଭୂମିର କର୍କଶତା ସୀତାଙ୍କ ସୁକୋମଳ ପାଦକୁ କଷ୍ଟପ୍ରଦ ହେବ, ସେଥିପାଇଁ ଭୂମି ଉପରେ ବିଭିନ୍ନ ରଙ୍ଗଯୁକ୍ତ ପାଖୁଡ଼ା ବିଛେଇ ଦେଇଛନ୍ତି ।

ସୀତାଙ୍କ ଦର୍ଶନରେ କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ମନରେ ଯେଉଁ ପ୍ରତିକ୍ରିୟା ହୋଇଛି, ତାକୁ ସମୀକ୍ଷା କରି ସେମାନଙ୍କ ବ୍ୟକ୍ତିତ୍ୱର ବିଶ୍ଳେଷଣ ଅତି ନାଟକୀୟ ଭଙ୍ଗୀରେ ସମ୍ପାଦନ କରିଛନ୍ତି କମ୍ବନ ।

ସୀତା ଥିଲେ ସୁକୋମଳ, ମଧୁର ସଙ୍ଗୀତ ପରି । ତାଙ୍କ ଦର୍ଶନରେ ଦର୍ଶକଙ୍କର ହାତ ସ୍ୱତଃସ୍ଫୂର୍ତ୍ତି ଭାବେ ଯୋଡ଼ି ହୋଇଯାଇଛି । ଅବଶ୍ୟ ରାମ ଓ ଋଷିଗଣ ଥିଲେ ବ୍ୟତିକ୍ରମ । କବିଙ୍କ ଯୁକ୍ତି ଅନୁଯାୟୀ, ସୀତାଙ୍କୁ ଯେଉଁମାନେ ଐଶ୍ୱରିକ ଶକ୍ତିର ମୂର୍ତ୍ତିମନ୍ତ ଦେବୀ ବୋଲି ଭାବୁଥିଲେ, ତାଙ୍କ ମନର ଏ ଚିନ୍ତାକୁ ସାକାର କରିବା ପାଇଁ ତାଙ୍କ ଶରୀର ଆଗେଇ ଯାଇଛି ।

ମିଳମାର ରାମ-ବର୍ଣ୍ଣନା ଯଦିଓ ବିସ୍ତୃତ ଓ ବ୍ୟାପକ ଥିଲା, ତଥାପି ରାମଙ୍କ ପରିଚୟ ନେଇ ସୀତାଙ୍କ ମନରେ ସନ୍ଦେହ ଘେରି ରହିଥିଲା । ରାମଙ୍କୁ ସିଧାସଳଖ ଚାହିଁବା ତାଙ୍କ ପାଇଁ ଅଶାଳୀନ ହେବ ଭାବି ଚୂଡ଼ି ସଜାଡ଼ିବା ବାହାନାରେ ରାମଙ୍କ ଉପରେ ଏକ ତିର୍ଯ୍ୟକ ସହସା ଦୃଷ୍ଟି ନିକ୍ଷେପ କଲେ ସୀତା । ଆଜିଯାଏଁ ତାଙ୍କ ମନକୁ ଯେଉଁସବୁ ସ୍ୱପ୍ନ ଆନ୍ଦୋଳିତ କରୁଥିଲେ, ସେ ସବୁର ଏକ ବାସ୍ତବ ପ୍ରତିରୂପ ରୂପେ ଦଣ୍ଡାୟମାନ ହୋଇଥିଲେ ରାମ ।

ରାମଙ୍କ ଉପରେ ସୀତାଙ୍କ ଦୃଷ୍ଟି ପଡ଼ିଛି କି ନାହିଁ, ନିମିଷକରେ ରାମଙ୍କ ମିଳ ଆକର୍ଷଣ କରିବା ପରି ସୀତାଙ୍କ ଆଖି ଆଡ଼କୁ ବନ୍ଧି ହୋଇ ଯାଇଛି ।

ଠିକ୍ ଏହି ସମୟରେ ଦଶରଥଙ୍କ ସମ୍ମତିରେ ପରଦିନ ବିବାହ ଅନୁଷ୍ଠିତ ହେବ ବୋଲି ଘୋଷଣା କରିଛନ୍ତି ବିଶ୍ୱାମିତ୍ର ।

## ଭୋଗ ଓ ଯୋଗର ସମନ୍ୱୟ

ପରଦିନ ପ୍ରାତଃକାଳରେ ବଶିଷ୍ଠ ବିବାହର ସମସ୍ତ ଉପକରଣ ସହ ବିବାହ ପାଇଁ ପ୍ରସ୍ତୁତ ହୋଇଯାଇଛନ୍ତି ।

ବର କନ୍ୟା ଫୁଲରେ ମଣ୍ଡିତ ହୋଇ ବିବାହ ବେଦୀରେ ଉପବିଷ୍ଟ ହୋଇଛନ୍ତି । ରାମ ଓ ସୀତା ପାଖାପାଖି ଉଭୟେ ଉଭୟଙ୍କୁ ଲାଗି ବସିଥିବାବେଳେ, କମ୍ବନ କହୁଛନ୍ତି, ସେମାନଙ୍କ ମିଳନରେ ସତେ ଯେପରି ଭୋଗ ଓ ଯୋଗର ଅପୂର୍ବ

ସମନ୍ୱୟ ସଙ୍ଘଟିତ ହୋଇଛି । କବିଙ୍କ ବିଶ୍ୱାସରେ—ସାଂସାରିକ ଆନନ୍ଦ ଓ ସ୍ୱର୍ଗୀୟ ସୁଖ ମଧ୍ୟରେ ଅସଙ୍ଗତି ନଥାଏ; ଉଭୟେ ପୂର୍ଣ୍ଣତା ମଧ୍ୟରେ ସମନ୍ୱିତ ହୋଇପାରନ୍ତି ।

ବିବାହ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଯାଇଛି; ବିଶ୍ୱାମିତ୍ରଙ୍କ କାର୍ଯ୍ୟ ମଧ୍ୟ ସମାପ୍ତ ହୋଇଛି । ପୁରାଣରେ ତାଙ୍କର ବିଦାୟକୁ କମ୍ବନ ଅତି ଲାଳିତ୍ୟପୂର୍ଣ୍ଣ ପଦ୍ୟ ମାଧ୍ୟମରେ ଅତି ମାର୍ମିକ ଭାବେ ବର୍ଣ୍ଣନା କରିଛନ୍ତି । ତାଙ୍କ ବିଚାରରେ, ବିଶ୍ୱାମିତ୍ର ଥିଲେ ପୂର୍ଣ୍ଣତାର ପରିଭାଷା :

ପରମ ସୁଖରେ ରାମ/ନବ ବିବାହିତ
ଜନକ ଦୁଲାଳୀ ସଙ୍ଗେ/କାଟୁଥିଲେ କାଳ
ବୈଦିକ ରୀତିରେ/ତାଙ୍କ ଉପରେ ଆଶିଷ
ଢାଳୁଥିଲେ ଅହର୍ନିଶ/ଋଷି ବିଶ୍ୱାମିତ୍ର ।
ବିଶ୍ୱାମିତ୍ର ଚାଲିଗଲେ/ଉତ୍ତର ଦିଗନ୍ତ
ଯେଉଁଠାରେ ଅବସ୍ଥିତ/ମେରୁ ପରବତ
ମେରୁ ପରବତ ଯେତ/ପର୍ବତ ସୁନାର
ତା'ଉପରେ ଅବସ୍ଥିତ/ଋଷିଙ୍କ କୁଟୀର ।

ବିଶ୍ୱାମିତ୍ରଙ୍କ ଏତାଦୃଶ ବର୍ଣ୍ଣନା ପରେ, କବି କମ୍ବନ, ତାଙ୍କ ପୁରାଣରେ ମିଳନ ପର୍ବର କର୍ତ୍ତା ଈଶ୍ୱରଙ୍କଠାରୁ ବିଦାୟ ମାଗିଛନ୍ତି ।

# ଅଯୋଧ୍ୟା କାଣ୍ଡ

ବର୍ତ୍ତମାନ ଆରମ୍ଭ : ଅଯୋଧ୍ୟା କାଣ୍ଡ । ଏଥିରେ କୁଜା ମନ୍ଥରା ଓ ଦଶରଥଙ୍କ କନିଷ୍ଠ ପତ୍ନୀ କୈକେୟୀଙ୍କ କୁମନ୍ତ୍ରଣାଦ୍ୱାରା ରାମଙ୍କ ସିଂହାସନ ଆରୋହଣରୁ ବଞ୍ଚିତ ହେବା ପ୍ରସଙ୍ଗ ବର୍ଣ୍ଣିତ । ରାମଙ୍କ ନିର୍ବାସନରେ ହିଁ ରାବଣଦ୍ୱାରା ସୀତାଙ୍କ ଅପହରଣ କ୍ଷେତ୍ର ପ୍ରସ୍ତୁତ ହୁଏ । ଏହାଦ୍ୱାରା ପାପ ଓ ଅତ୍ୟାଚାରର ବିନାଶ ପ୍ରାପ୍ତି ହୁଏ ।

କମ୍ବନ ଅଯୋଧ୍ୟା କାଣ୍ଡ ଆରମ୍ଭ କରନ୍ତି ଏକ ସୁନ୍ଦର ବର୍ଣ୍ଣନାରେ ।

ପ୍ରକୃତି
ଯାହା ବ୍ୟୋମରୁ ହିଁ ଜାତ
ବିସ୍ତୃତ ଯେ
ଦିଗ୍‌ବିଦିଗ ଅନନ୍ତ ଅସୀମ ;
ଈଶ୍ୱରଙ୍କ ଅଟେ ଏ ନିବାସ
ଏଠାରେ କରନ୍ତି ସିଏ ଆତଯାତ
ଏଠାରୁ ବି ହୁଅନ୍ତି ଅନ୍ତର
ଯେଉଁପରି ଆତ୍ମା ଓ ଚେତନା,
ଶରୀରରେ ବାସ କରି
ଅତିକ୍ରମ କରିଥାନ୍ତି
ଶରୀରର ସୀମା ।
ଈଶ୍ୱର ବା କିଏ ଆଉ
ସେ କେବଳ ଶ୍ରେଷ୍ଠ ବୀର
ପିନ୍ଧିଥାନ୍ତି ଯୋଦ୍ଧାର ଭୂଷଣ
ବିମାତା ଓ ମନ୍ଥରାଙ୍କ ମନ୍ତ୍ରଣାରେ
ପରିତ୍ୟାଗି ରାଜ ସିଂହାସନ
ଲଙ୍ଘିଥାନ୍ତି ଗିରି ଓ ସାଗର
ଏବଂ ଶେଷେ
ଅତ୍ୟାଚାର ଶୋଷଣରୁ

ଦେବତାଙ୍କୁ
କରିଥାନ୍ତି ମୁକ୍ତ ।

ଏହି କବିତାର ମୂଳ ରଚନା, ଯାହା ଅନୁବାଦର କର୍କଶତା ଓ ଛନ୍ଦହୀନତା- ଦ୍ୱାରା ଧର୍ଷିତ ଓ ଅଧ୍ୟୁଷିତ, କମ୍ବନଙ୍କ ବୈଜ୍ଞାନିକ ଚିନ୍ତାଧାରା ସହ ଧାର୍ମିକ ଆବେଗ ଓ ଅନୁପମ ଦୃଶ୍ୟର ସମନ୍ୱୟରେ ରଞ୍ଜିମନ୍ତ ହୋଇଛି । ଏହା କମ୍ବନଙ୍କ କାବ୍ୟଶକ୍ତିର ଅପୂର୍ବ ନିଦର୍ଶନ ମଧ୍ୟ ।

**ରାଜସଭା**

ମିଥିଳାରୁ ଫେରିଲା ପରେ ଅଯୋଧ୍ୟାରେ ବେଶ କିଛି ଆନନ୍ଦ-ମୁଖର ଦିନ ଅତିବାହିତ କରନ୍ତି ଦଶରଥ । ନିଜର ସମର୍ଥ ଓ ପୁଣ୍ୟାତ୍ମା ପୁତ୍ରମାନଙ୍କର ବିବାହରେ ଯେପରି ତାଙ୍କର ସାଂସାରିକ ଜୀବନର ପୂର୍ଣ୍ଣାଙ୍ଗପ୍ରାପ୍ତି ହୁଏ । ଦିନେ, ରାଜାପ୍ରାସାଦରୁ ବାହାରି ହସ୍ତି ଆରୋହଣ ପୂର୍ବକ ରାଜା ଦଶରଥ ରାଜସଭା ଦିଗକୁ ଯାଆନ୍ତି ଏବଂ ମନ୍ତ୍ରୀମାନଙ୍କୁ ସଭାଗୃହକୁ ଆମନ୍ତ୍ରଣ କରିବା ପାଇଁ ନିର୍ଦ୍ଦେଶ ଦିଅନ୍ତି । ପ୍ରଥମେ ପ୍ରବେଶ କରନ୍ତି ପ୍ରଧାନମନ୍ତ୍ରୀ, ବଶିଷ୍ଠ । ଅନ୍ୟାନ୍ୟ ମନ୍ତ୍ରୀଗଣ ନିଜ ନିଜ ପଦବୀ କ୍ରମରେ ଜଣେ ପରେ ଜଣେ ପ୍ରବେଶ କରନ୍ତି ଏବଂ ପ୍ରଥମେ ବଶିଷ୍ଠଙ୍କୁ ମସ୍ତକ ଅବନତ କରି ସମ୍ମାନ ପ୍ରଦର୍ଶନ କରିବା ପରେ ରାଜାଙ୍କୁ ଯୋଡ଼ହସ୍ତରେ ପ୍ରଣିପାତ କରନ୍ତି । ବଶିଷ୍ଠ ଓ ରାଜା ସେମାନଙ୍କୁ ସ୍ୱାଗତ ଜଣାନ୍ତି—ପରେ ନିଜ ନିଜର ଆସନ ଅଳଂକୃତ କରନ୍ତି ସେମାନେ । ଅତି ବିନମ୍ରତା ସହ ଯୋଡ଼ହସ୍ତରେ ସମସ୍ତଙ୍କ ଉପରେ ଦୃଷ୍ଟି ନିକ୍ଷେପ କରି ରାଜା କୁହନ୍ତି : ବୃଦ୍ଧ ଅବସ୍ଥା ପ୍ରାପ୍ତି ହେଲେ ତାଙ୍କ ପୂର୍ବପୁରୁଷମାନେ ଯେଉଁପରି ପୁତ୍ରମାନଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କରି ବନବାସ ଗ୍ରହଣ କରନ୍ତି, ଆଜି ସେ ସେହି ନିଷ୍କଳଙ୍କ ପୂର୍ବଜଙ୍କ ପଦାଙ୍କ ଅନୁସରଣ ପୂର୍ବକ ଦିବ୍ୟଜ୍ଞାନ ଆହରଣ କରିବା ପାଇଁ ବାନପ୍ରସ୍ଥରେ ଯିବା ପୂର୍ବରୁ ନିଜ ପୁତ୍ର ହାତରେ ରାଜ୍ୟଭାର ଅର୍ପଣ କରିବାକୁ ମନସ୍ଥ କରିଛନ୍ତି ।

ନିଜର ଏ ପ୍ରସ୍ତାବ ଉପରେ ବିସ୍ତୃତ ଆଲୋଚନା କରି ପରାମର୍ଶ ଦେବା ପାଇଁ ଦଶରଥ ମନ୍ତ୍ରୀ ପରିଷଦଙ୍କୁ ଆହ୍ୱାନ କରନ୍ତି ।

ବଶିଷ୍ଠ ରାଜାଙ୍କ ସମସ୍ତ କଥା ଗଭୀର ମନୋନିବେଶ ପୂର୍ବକ ଶୁଣୁଥିଲେ ଏବଂ ନିଜର ସମସ୍ତ ଜ୍ଞାନ ଓ ଅବବୋଧ ପ୍ରୟୋଗ କରି ତଥା ମନ୍ତ୍ରୀ ପରିଷଦର ସର୍ବସମ୍ମତ ମତ ଓ ପ୍ରଜାଙ୍କ ହିତକୁ ଆଖି ଆଗରେ ରଖି ତାଙ୍କର ପ୍ରସ୍ତାବ ଉପସ୍ଥାପନ କରନ୍ତି । ସେ କୁହନ୍ତି :

ଏହା ହିଁ ପବିତ୍ର କର୍ତ୍ତବ୍ୟ
ଆପଣଙ୍କ ଉକ୍ତି କହେ
ଆପଣଙ୍କ ମହତ୍ତ୍ୱର ଭାଷା ।

ନିଜର ପ୍ରସ୍ତାବ ବଶିଷ୍ଠଙ୍କ ଅନୁମୋଦନ ଲାଭ କରିଥିବାରୁ ଦଶରଥ ଆନନ୍ଦ ପ୍ରକାଶ କରନ୍ତି ।

ଅନ୍ୟାନ୍ୟ ପ୍ରବୀଣ ମନ୍ତ୍ରୀମାନଙ୍କ ମୁଖଦେଶରେ ଅନୁମୋଦନର ଚିହ୍ନ ଅତୀବ ପରିସ୍ଫୁଟ ଦିଶେ । ଦଶରଥଙ୍କ ଅନୁରୋଧରେ ରାମଙ୍କୁ ସଭାଗୃହକୁ ଡାକିଆଣନ୍ତି ସୁମନ୍ତ୍ର ।

ବଶିଷ୍ଠଙ୍କୁ ଶିର ଅବନତ କରି ପ୍ରଣିପାତ କଲାପରେ ଦଶରଥଙ୍କ ପାଦ ସ୍ପର୍ଶ କରନ୍ତି ରାମ । ଦଶରଥ ସ୍ନେହର ଆତିଶଯ୍ୟରେ ରାମଙ୍କୁ ଆଲିଙ୍ଗନ କରନ୍ତି—ତାଙ୍କ ଚକ୍ଷୁଦେଶରୁ ବୋହି ଆସୁଥାଏ ଲୁହଧାର ।

ଦଶରଥ କେଉଁପରି ତାଙ୍କ ପୂର୍ବବର୍ତ୍ତୀ ରାଜାମାନେ ଜୀବନର ସାଂଧ୍ୟକାଳରେ ପୁତ୍ରମାନଙ୍କୁ ରାଜ୍ୟଭାର ଦେଇ ବାନପ୍ରସ୍ଥ ଗ୍ରହଣ କରିବାର ରାଜକୀୟ ପରମ୍ପରା ରହିଛି—ସେ ବିଷୟରେ ବ୍ୟାଖ୍ୟା କରନ୍ତି ।

ପିତାଙ୍କ ଅନୁରୋଧ ପରେ ପଦ୍ମନେତ୍ର ପୁତ୍ର ରାମଙ୍କ ମନରେ ନା ସିଂହାସନର ଲୋଭ ଉଦ୍ରେକ ହୁଏ, ନା ସିଂହାସନ ପାଇଁ କୌଣସି ବୀତସ୍ପୃହା ଜନ୍ମହୁଏ । ସେ ଉପଲବ୍ଧି କରନ୍ତି ଯେ—ଶାସନ କରିବା ହିଁ ତାଙ୍କର କର୍ତ୍ତବ୍ୟ । ଏଣୁ 'ରାଜାଙ୍କ ଆଦେଶ ହିଁ ମୋ ପାଇଁ ନିଦ୍ଧୁମ' ଭାବି ରାମ ରାଜାଙ୍କ ଆଦେଶକୁ ଗ୍ରହଣ କରନ୍ତି ।

ଦଶରଥ ପୁନଶ୍ଚ ରାମଙ୍କୁ ଆଲିଙ୍ଗନ କରନ୍ତି ଏବଂ ମନ୍ତ୍ରୀଙ୍କ ଗହଣରେ ରାଜପ୍ରାସାଦ ଦିଗକୁ ଗମନ କରନ୍ତି ।

ମଣ୍ଡଳମଣ୍ଡଳର ସମସ୍ତ ରାଜାଙ୍କ ନିକଟକୁ ରାଜ୍ୟାଭିଷେକର ନିମନ୍ତ୍ରଣ ପଠାଯାଏ । ନିମନ୍ତ୍ରଣଗୁଡ଼ିକ ଗରୁଡ଼ଙ୍କ ମୁଦ୍ରା ଥିବା ସ୍ୱର୍ଣ୍ଣଖଚିତ ମୋହରରେ ବନ୍ଦ କରାଯାଏ ।

## ଉତ୍ସବମୁଖର ନଗର

ଅଭିଷେକ ପାଇଁ ରାମ ପ୍ରସ୍ତୁତ ହେଉଥାନ୍ତି । ଅଯୋଧ୍ୟାର ପ୍ରଜାମାନେ ସୁନ୍ଦର ନଗରୀକୁ ଏତେ ରମଣୀୟ ଭାବେ ସଜ୍ଜିତ କରିଥାନ୍ତି, ମନେହେଉଥିଲା ସତେ ଯେପରି ସୂର୍ଯ୍ୟଙ୍କ ଜ୍ୟୋତିରେ ଜ୍ୟୋତିସ୍ନାନ କରିଛନ୍ତି ସହରକୁ ଏବଂ ବିଶ୍ୱପାଳକ ବିଷ୍ଣୁଙ୍କର ବକ୍ଷର ପ୍ରଭାଦୀପ୍ତ ଆଭୂଷଣକୁ ମାଜି ସଫା କରିଦେଇଛନ୍ତି ।

ରଥ ଓ ହାତୀରେ ସହରର ସମସ୍ତ ରାସ୍ତା ପୂର୍ଣ୍ଣ । ସ୍ୱର୍ଣ୍ଣମଣ୍ଡିତ ହାତୀମାନେ ଗ୍ଲୁଥିବା ବେଳେ ପ୍ରଥମ ସୂର୍ଯ୍ୟରଶ୍ମିରେ ଉଜ୍ଜ୍ୱଳ ପାହାଡ଼ ପରି ଦଶୁଥାନ୍ତି ; ସେମାନଙ୍କ କପାଳରେ ଯେପରି ସୂର୍ଯ୍ୟ ଚକ୍‌ମକ୍ କରୁଛନ୍ତି ।

ସାରା ସହର ଏପରି ହର୍ଷ ଓ ଉଲ୍ଲାସରେ ନିମଗ୍ନ ଥିଲାବେଳେ ପ୍ରବେଶ କରିଛି କୁବ୍ଜା ମନ୍ଥରା । ମନ୍ଥରା ଥିଲା ପାପର ପ୍ରତିରୂପ—ଯେଉଁ ପାପର ପ୍ରତିନିଧିତ୍ୱ କରୁଥିଲା ରାବଣ । ଉତ୍ସବଜନିତ ହର୍ଷୋଲ୍ଲାସ ଦେଖି ତାର ମନ ଈର୍ଷାରେ ଭରିଯାଇଛି । ତାର ଚକ୍ଷୁ ଚଞ୍ଚଳ ହୋଇ ଉଠିଛି ; କ୍ରୋଧରେ ତାର ଅନ୍ତରାତ୍ମା ଜଳିଉଠିଛି ; ତାର ହୃଦୟ ବିଷାଦରେ ପୂରିଉଠିଛି ; ତାର ଆଖିରୁ ଅଗ୍ନି ନିର୍ଗତ ହୋଇଛି ଏବଂ କ୍ରୋଧରେ ଅଗ୍ନିମୟ ହୋଇଉଠିଛି ତାର ବାଣୀ ।

ତନୋଟି ପୃଥିବୀକୁ ବିଷାଦରେ ଆଚ୍ଛନ୍ନ କରିପାରୁଥିବା ଏ ସ୍ତ୍ରୀଲୋକ ଏହାପରେ ଦଶରଥଙ୍କ ତୃତୀୟ ପତ୍ନୀ ତଥା ଭରତଙ୍କ ମାତା କୈକେୟୀଙ୍କ ପ୍ରାସାଦ ଅଭିମୁଖେ ଯାତ୍ରା କରିଛି । ହଠାତ୍ ତାର ସ୍ମୃତିରେ ଜାଗିଉଠିଛି ଅତୀତର ସେଇ ଦୃଶ୍ୟ—ଯେତେବେଳେ ବାଳକ ରାମ ହସି ହସି ଧନୁରେ ମାଟିଖଣ୍ଡ ଯୋଖି ତାର କୁଜକୁ ଲକ୍ଷ୍ୟ କରି ନିକ୍ଷେପଣ କରୁଥିଲେ । ତାର ଶାରୀରିକ ଅକ୍ଷମତା ପ୍ରତି ଔଦ୍ଧତ୍ୟ ପ୍ରକାଶ କରିଥିବା ଏ ବାଳକର ସିଂହାସନ ଆରୋହଣ ସେ ସହ୍ୟ କରିବ କିପରି ! ସପତ୍ନୀ ପୁତ୍ର ରାମଙ୍କୁ ଏ ଅଭିଷେକରୁ ନିବୃତ୍ତ କରିବା ଉଦ୍ଦେଶ୍ୟରେ କୈକେୟୀଙ୍କୁ ପ୍ରଭାବିତ କରିବା ପାଇଁ ତାଙ୍କ ଶୟନ କକ୍ଷରେ ପ୍ରବେଶ କଲା ମନ୍ଥରା ।

## କମ୍ବନଙ୍କ ସୂକ୍ଷ୍ମତା

ପୁରାଣର ଅନ୍ୟାନ୍ୟ ଚରିତ୍ର ପରି କୈକେୟୀଙ୍କ ଚରିତ୍ର ଚିତ୍ରଣ କଲାବେଳେ ବାଲ୍ମୀକିଙ୍କ ଅନୁସୃତ ପରମ୍ପରା ଅନୁସରଣ ନକରି କମ୍ବନ ତାଙ୍କଠାରୁ ଏକ ଭିନ୍ନ ଶୈଳୀ ଅବଲମ୍ବନ କରିଛନ୍ତି । ତାଙ୍କ ଚିତ୍ରଣରେ କୈକେୟୀ ଥିଲେ ପ୍ରେମାସ୍ପଦ, କରୁଣାପ୍ରାପ୍ତ, ଉଦାର ଓ ଦୟାଶୀଳ ବ୍ୟକ୍ତିତ୍ୱ ; ଏପରିକି ତାଙ୍କ ଅବଚେତନରେ ନିଜ ପୁତ୍ର ଭରତ ଓ ପାଳିତ ପୁତ୍ର ରାମଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନଥିଲା । କୈକେୟୀଙ୍କୁ ଧୂର୍ତ୍ତ ମନ୍ଥରାର ଆକ୍ରମଣ ବିରୁଦ୍ଧରେ ପ୍ରସ୍ତୁତ କରିବାକୁ କମ୍ବନ ଏହିସବୁ ସୂକ୍ଷ୍ମତାର ଅବଲମ୍ବନ କରିଛନ୍ତି । ଅବଶ୍ୟ, ସେଥିପାଇଁ କମ୍ବନ ବହୁବିଧ ସମସ୍ୟାର ସମ୍ମୁଖୀନ ହୋଇଛନ୍ତି କିନ୍ତୁ ସୂକ୍ଷ୍ମ ମନସ୍ତାତ୍ତ୍ୱିକ ସ୍ତରରେ ସେ ସବୁର ସମାଧାନ କରିପାରିଛନ୍ତି । ସରଳ ଓ ପାପଶୂନ୍ୟ କୈକେୟୀଙ୍କ ସରଳ ମନକୁ ବିଷାକ୍ତ କରିଦେବାର ଦୃଶ୍ୟ ନିଜସ୍ୱ ଶୈଳୀରେ ଏକ ପୁରାଣ ନିଷ୍କର୍ଷ । କୈକେୟୀଙ୍କୁ ଘୃଣିତ ପାପର କବଳିତ ହେବାର ଦୃଶ୍ୟ କମ୍ବନ ଯେଉଁଭଳି ନାଟକୀୟ ଶୈଳୀରେ ପରିବେଷଣ କରିଛନ୍ତି, ତାହା ଏ ପୁସ୍ତକର

ସଙ୍କୀର୍ଣ୍ଣ ପୃଷ୍ଠାରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ବର୍ତ୍ତମାନ ଏତିକି ଯଥେଷ୍ଟ ହେବ ଯେ, ମନ୍ଥରା ଯେଉଁ ଯୁକ୍ତିଦ୍ୱାରା କୈକେୟୀଙ୍କ ମନରେ ପରିବର୍ତ୍ତନ ଆଣି ପାରିଲା, ସେ ଯୁକ୍ତି ମଣିଷ ହୃଦୟର ଲିପ୍ସା ଦ୍ୱାରା ପରିଚାଳିତ ନଥିଲା ବରଂ ଏହା ହୃଦୟର ମହାନୁଭବତା ଦ୍ୱାରା ପର୍ଯ୍ୟବେସିତ ହୋଇଥିଲା । ତାର ପ୍ରଶ୍ନ ଥିଲା 'ଦୁଃଖ ଓ ଦାରିଦ୍ର୍ୟଜର୍ଜରିତ କୌଣସି ବ୍ୟକ୍ତି ଯଦି ଆପଣଙ୍କୁ ଭିକ୍ଷା ମାଗିବାକୁ ଆସେ, ଆପଣ କ'ଣ ତାକୁ ସାହାଯ୍ୟ କରିବାକୁ କୌଶଲ୍ୟାଙ୍କ ନିକଟରେ ଭିକ୍ଷା ମାଗିବେ ନା ସେ ଭିକ୍ଷୁକକୁ 'ନାହିଁ' କରିଦେବେ ? ଯଦି ତାଙ୍କ ପୁତ୍ର ରାମ ରାଜା ହୁଅନ୍ତି ତା'ହେଲେ ଏ ସାରା ପୃଥିବୀ କେବଳ କୌଶଲ୍ୟାଙ୍କର ହୋଇଯିବ ଏବଂ ଆପଣ କ'ଣ ତାଙ୍କର ଦାନ ଉପରେ ନିର୍ଭର କରି ବଞ୍ଚି ରହିବେ ?'

କବିଙ୍କ ମତରେ, ଦୁଷ୍ଟମତି ମନ୍ଥରାର ଏ ପ୍ରଶ୍ନ ମହାନ୍ ରାଣୀଙ୍କ ପବିତ୍ର ହୃଦୟକୁ ଅପବିତ୍ରତାରେ ଭରିଦେଇଛି ଏବଂ ଏହା ହିଁ ହୋଇଛି ପାପର ଧ୍ୱଂସ ପାଇଁ ଦେବତାମାନେ ପାଇଥିବା ଆଶୀର୍ବାଦର ପରିଣାମ । କୈକେୟୀ ଏହାପରେ କେଉଁ ଉପାୟରେ ଭରତଙ୍କ ପାଇଁ ସିଂହାସନ ପାଇହେବ, ମନ୍ଥରାକୁ ପ୍ରଶ୍ନ କରନ୍ତି । ମନ୍ଥରା ଯା'ର ମନ ଠିକ୍ ତାର କୁଜ ପରି ବକ୍ରିତ, କୈକେୟୀଙ୍କୁ ରାଜା ଦଶରଥଙ୍କ ଦୁଇ ବର ବିଷୟରେ ସ୍ମରଣ କରେଇଦିଏ । ସମ୍ବରଣ ନାମକ ଏକ ରାକ୍ଷସ ଉପରେ ବିଜୟ ଲଭିବେଳେ ରାଜା କୈକେୟୀଙ୍କୁ ଏହି ବର ଦୁଇଟି ଯାଚିଥିଲେ । ମନ୍ଥରା କହିଲା, 'ଗୋଟିଏ ବରଦ୍ୱାରା ଆପଣ ପୁତ୍ର ପାଇଁ ରାଜ୍ୟ ମାଗିନିଅନ୍ତୁ, ଅନ୍ୟଟି ସାହାଯ୍ୟରେ ରାମଙ୍କୁ ଚଉଦ ବର୍ଷ ପାଇଁ ବନବାସ ପଠେଇ ଦିଅନ୍ତୁ ।' ଏହାପରେ କୌଣସି ସମୟ ନଷ୍ଟ ନକରି ରାଣୀ ଦଶରଥଙ୍କ ନିକଟକୁ ଗଲେ ।

ରାଣୀ ବର ମାଗନ୍ତେ, ଗଭୀର ଭାବେ ମର୍ମାହତ ହୋଇପଡ଼ିଲେ ଦଶରଥ । ରାମଙ୍କୁ ନିର୍ବାସିତ ନ କରିବାକୁ ସେ ରାଣୀଙ୍କୁ ବହୁତ ଅନୁରୋଧ କଲେ । ରାଜାଙ୍କର କୌଣସି ଅନୁରୋଧ ଶୁଣିବାକୁ ପ୍ରସ୍ତୁତ ନଥିଲେ ରାଣୀ ।

ଯନ୍ତ୍ରଣାଦଗ୍ଧ ରାଜା ବେଦନାରେ ଭୂଶାୟୀ ହେଲେ । କିନ୍ତୁ ଆବେଗଶୂନ୍ୟ ରାଣୀ ତାଙ୍କ ଉଦ୍ଦେଶ୍ୟରେ କହିଲେ, 'ଆପଣ ଯଦି ବର ପ୍ରଦାନ କରିବେ, ମୁଁ ତାକୁ ଗ୍ରହଣ କରିବି, ନଚେତ୍, ହେ ରାଜନ ! ମୁଁ ଆତ୍ମହତ୍ୟା କରିବି ।' ଦଶରଥ ଜାଣିଲେ ଯେ, କୈକେୟୀ ନିଜ ଜିଦ୍‌ରେ ଅଟଳ, ଏଣୁ ତୀବ୍ର ଯନ୍ତ୍ରଣା ଓ ଦୁଃଖ ଭିତରେ ତାଙ୍କୁ ବର ପ୍ରଦାନ ପୂର୍ବକ କହିଲେ :

'ଅଧମ ଏ ନଷ୍ଟ ସ୍ତ୍ରୀ' କହିଲେ ରାଜନ
ତଥାସ୍ତୁ ତଥାସ୍ତୁ ତୋତେ ବର କଲି ଦାନ
ମୋର ପୁତ୍ର ହେଉ ରାଜା ସାରି ଦନସ୍ତର
ମୃତ୍ୟୁ ଲଭି ହେବ ରାଜା ସେଇ ସ୍ୱର୍ଗପୁର

ତୁ' ଆଜି ତୋର ପୁତ୍ର ପାଇଁ ଅପଯଶ
ପାଶବନ୍ଦ ଲଙ୍ଘି କେବେ ନିଦ୍ରାର ସାଗର ।

## କୈକେୟୀଙ୍କ ନିଦ୍ରା

ଏହା କହିଲାବେଳେ ଦଶରଥଙ୍କ ଦୁଃଖ ଏକ ତୀକ୍ଷ୍ଣ ଧାରଯୁକ୍ତ ଛୁରୀ ପରି ତାଙ୍କ ହୃଦୟକୁ ବିଦ୍ଧ କରୁଥିଲା ଓ ସେ ଫଙ୍କା ହେରେଇ ବସିଲେ । କିନ୍ତୁ କୈକେୟୀଙ୍କ ହୃଦୟରେ ଭରିଯାଇଥିଲା ପୂର୍ଣ୍ଣତା ଏବଂ ସେ ତତ୍‌କ୍ଷଣାତ୍ ନିଦ୍ରାରେ ଶୋଇଗଲେ । ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ବିଶ୍ଳେଷଣ କଲେ ମନେହେବ, ଏକ ସ୍ୱାରଯୁକ୍ତ ମନ ଯେତେବେଳେ ସହସା ଉତ୍କଣ୍ଠାରୁ ମୁକ୍ତିଲାଭ କରେ, ତାହା ତତ୍‌କ୍ଷଣାତ୍ ଗଭୀର ନିଦ୍ରାରେ ଶୋଇଯାଏ । ଏହି ମନସ୍ତାତ୍ତ୍ୱିକ ସତ୍ୟକୁ ଏକ ନାଟକୀୟ ରୂପ ଦେବାକୁ ଯାଇ କବି କୈକେୟୀଙ୍କୁ ନିଦ୍ରାଜନିତ ଶାନ୍ତିରେ ଶୋଇବାକୁ ଦେଇଛନ୍ତି ଏବଂ ସେହି ସମୟରେ ଦଶରଥଙ୍କୁ ଏକ ଯନ୍ତ୍ରଣାଦଗ୍ଧ ଅଚେତନ ଅବସ୍ଥାରେ ଛାଡ଼ିଦେଇଛନ୍ତି ।

## ପ୍ରକୃତିର ପ୍ରତିବାଦ

କୈକେୟୀ ଯଦିଓ ଶାନ୍ତିପୂର୍ଣ୍ଣ ଗଭୀର ନିଦ୍ରାରେ ଶୋଇଯାଇଥିଲେ, କିନ୍ତୁ ପ୍ରକୃତି, କମ୍ବନଙ୍କ ମତରେ, ରାଣୀଙ୍କ ଏ ବିଶ୍ୱାସଘାତକତା ବିରୁଦ୍ଧରେ ପ୍ରତିବାଦ କରୁଥିଲା ।

ରାତି ପାହିଗଲା, ସକାଳ ଓହ୍ଲାଇ ଆସିଲା । ରାତିର ରମଣୀ, କମ୍ବନଙ୍କ ବର୍ଣ୍ଣନାରେ, ନାରୀର ଏ ହୀନ ଆଚରଣରେ ଲଜ୍ଜ୍ୟା ପାଇ ପୁରୁଷଙ୍କୁ ତାର ମୁହଁ ନ ଦେଖେଇବାକୁ ଶୀଘ୍ର ଶୀଘ୍ର ଚାଲିଗଲା । ବିବାହ ପରଠୁ ଯେଉଁ ନାରୀ ଦଶରଥଙ୍କ ଆତ୍ମା ବୋଲି ନିଜକୁ ପରିଚୟ ଦେଉଥିଲା, ସେ ସ୍ୱାମୀଙ୍କର ଏପରି ଶୋକାଗ୍ରସ୍ତ ଅବସ୍ଥାରେ ମଧ୍ୟ ସାମାନ୍ୟ ଅନୁକମ୍ପା ଦେଖେଇଲା ନାହିଁ ।

ଦିବସର ଆଗମନରେ ନକ୍ଷତ୍ରଗଣ ଅନ୍ତର୍ହିତ ହୋଇଯାଆନ୍ତି । ତାରକାଖଚିତ ଆକାଶ ବହୁ ଦୂର ପରିବ୍ୟାପ୍ତ ଚନ୍ଦ୍ରାତପ ପରି ଦିଶୁଥାଏ । ମନେହୁଏ, ଯେପରି ଏଠି ବହୁ ମୁକ୍ତାସମ ଝଲମଲ ପଦାର୍ଥ ଝୁଲୁଛି ଏବଂ ସେମାନଙ୍କର ଶ୍ୱେତ ଔଜ୍ଜ୍ୱଲ୍ୟରେ ସାରା ପୃଥିବୀ ସ୍ନାନ କରୁଛି । ବର୍ତ୍ତମାନ ରାମ (ଯାହାଙ୍କ ନୀଳ-ଲୋହିତ ଆଖି ଉତ୍‌ଫୁଲ୍ଲ ପଦ୍ମଫୁଲପରି ହସ ହସ) ଯାହାଙ୍କର ଅଭିଷେକ ସ୍ଥଗିତ ହୋଇଯାଇଛି, ସେ ପରିପ୍ରେକ୍ଷୀରେ ଚନ୍ଦ୍ରାତପର ଆବଶ୍ୟକତା ବା କ'ଣ ଅଛି ? ରାମ ବାଲ୍କଳସ୍ତ୍ର ପରିଧାନ କରି ଅଭିମୁକ୍ତ ହେବା ପୂର୍ବରୁ ଆକାଶରୁ ତାରାମାନେ ଲୁଚିଗଲା ପରି, ଚନ୍ଦ୍ରାତପକୁ ତୋଳି ନିଆଯାଇଛି ।

ସୂର୍ଯ୍ୟ ଉଇଁଲା । ଉପରେ ଜମିଥିବା ବହଳ ଧୂଆଁ ସମ କଷ୍ଟରୁଣ ଅନ୍ଧକାର ଅପସରିଗଲା । ଦଶରଥଙ୍କ ଜୀବନ (ସୂର୍ଯ୍ୟଙ୍କ ଉତ୍ତରାଧିକାରୀ) ଲିଭ ଲିଭ ଆସୁଥିବା ବତୀ ପରି ମଳିନ ପଡ଼ିଆସିଲା । ଦୁଷ୍ଟମତି କୈକେୟୀଙ୍କ ପାପସିକ୍ତ ବିଶ୍ୱାସଘାତକତାରେ କ୍ରୋଧାନ୍ଧିତ ହୋଇ ଜ୍ୱଳମାନ ସୂର୍ଯ୍ୟ ପୂର୍ବର ପାହାଡ଼ ଉପରେ ଉଦୟ ହେଲା ।

## ଅଭିଷେକ ଭିଡ଼

ଅଯୋଧ୍ୟାର ପ୍ରଜାଗଣ ଅନ୍ତଃପୁରର ଘଟଣାପ୍ରବାହ ସମ୍ବନ୍ଧରେ କିଛି ଜାଣି ନଥିବା ହେତୁ ବହୁ ଉଦ୍ଦୀପନା ସହ ରାଜାଭିଷେକକୁ ଅପେକ୍ଷା କରି ରହିଥିଲେ । ପ୍ରତ୍ୟେକ ନିଜ ନିଜ ବସ୍ତ୍ରାଭରଣ ଓ ମନ୍ତ୍ରିଷ୍କର ପରିପକ୍ୱତା ବିସ୍ତାରରେ ଅଭିଷେକ ବିଷୟ କଳ୍ପନା କରି ଆନନ୍ଦିତ ହେଉଥିଲେ । ପରିଣତ ବୟସ୍କ ନାରୀମାନେ ଭାବୁଥିଲେ ଯେ ରାମ କୌଶଲ୍ୟାଙ୍କ ମାତୃହୃଦୟ ନେଇ ସିଂହାସନ ଆରୋହଣ କରିବେ । ଋଷିମାନେ ଘଟଣାସମୂହକୁ ବଶିଷ୍ଠଙ୍କ ନିର୍ଲିପ୍ତ ଦୃଷ୍ଟିଭଙ୍ଗି ନେଇ ଅନୁଧ୍ୟାନ କରୁଥିଲେ । ତରୁଣୀଗଣ ଆନନ୍ଦମୁଖର ପରିବେଶକୁ ସୀତାଙ୍କ ପରି ଉପଭୋଗ କରୁଥିଲେ । ଆନନ୍ଦରେ ସୀତା ଲକ୍ଷ୍ମୀଙ୍କ ପରି ଦିଶୁଥିଲେ । ପରଲୋକ ପାଇଁ ଅପେକ୍ଷାମାଣ ବୃଦ୍ଧ ଲୋକ ଦଶରଥଙ୍କ ପରି ଦିଶୁଥିଲେ ସ୍ଥିର ଓ ଗମ୍ଭୀର । ସୀତାପତି ରାମଙ୍କ ରାଜାଭିଷେକ ଦର୍ଶନ ପାଇଁ ପୃଥିବୀର ସମସ୍ତ ରାଜା ଓ ରାଜପୁତ୍ର ଅଯୋଧ୍ୟାରେ ସମବେତ ହୋଇଥିଲେ ।

## ସଦ୍ୟ-ପ୍ରସ୍ଫୁଟିତ ପଦ୍ମ

ଅଯୋଧ୍ୟାରେ ଧୀରେ ଧୀରେ ଅଭିଷେକ ଦର୍ଶନାର୍ଥୀଙ୍କ ଭିଡ଼ ବଢୁଥିଲାବେଳେ ରାଜପ୍ରାସାଦ ମଧ୍ୟରେ ପୂଜାବିଧିରେ ବ୍ୟସ୍ତ ଥିଲେ ବଶିଷ୍ଠ । ରାଜାଙ୍କୁ ତୁରନ୍ତ ସେଠାକୁ ଡାକି ଆଣିବା ପାଇଁ ବଶିଷ୍ଠ ସୁମନ୍ତ୍ରଙ୍କୁ ନିର୍ଦ୍ଦେଶ ଦେଲେ । ସୁମନ୍ତ୍ର ଦଶରଥଙ୍କ ପ୍ରାସାଦକୁ ଗଲେ କିନ୍ତୁ ସେଠାରେ ତାଙ୍କୁ ନଦେଖି, କୈକେୟୀଙ୍କ ପ୍ରାସାଦରେ ପ୍ରବେଶ କଲେ । ସେଠାରେ କୈକେୟୀ ରାମଙ୍କୁ ତାଙ୍କ ନିକଟରେ ଉପସ୍ଥିତ କରାଇବା ପାଇଁ ସୁମନ୍ତ୍ରଙ୍କୁ ନିର୍ଦ୍ଦେଶ ଦେଲେ । ରାମ କୈକେୟୀଙ୍କ ନିକଟରେ ପହଞ୍ଚି ମାତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲେ । କୈକେୟୀ କହିଲେ, 'ରାଜାଙ୍କ ଆଦେଶ— ଏ ରାଜ୍ୟର ରାଜା ହେବେ ତୁମ ଭାଇ ଭରତ ଏବଂ ତମେ ବଣକୁ ଯାଇ, ଜଟାଧାରଣ ପୂର୍ବକ ସାଧୁସନ୍ନ୍ୟାସୀଙ୍କ ସଙ୍ଗରେ ପ୍ରାୟଶ୍ଚିତ୍ତ ତଥା ପୁଣ୍ୟତୋୟା ନଦୀରେ ସ୍ନାନ କରି ଜୀବନ ଅତିବାହିତ କରିବ । ଏହିପରି ଚଉଦ ବର୍ଷ ବନବାସ ପରେ ରାଜପ୍ରାସାଦକୁ ଫେରିଆସିବ ।'

ଏପରି ନିଷ୍ଠୁର ଆଦେଶରେ ରାମ ଆନନ୍ଦିତ ହେଲେ । କବିଙ୍କ ବର୍ଣ୍ଣନାରେ ରାମଙ୍କର ମୁଖଦେଶ ଯାହା ଆଦେଶ ଶୁଣିବା ପୂର୍ବରୁ ସତେଜ ସୁନ୍ଦର ପଦ୍ମଫୁଲ ପରି

ହେଉଥିଲା, ଏହା ଶୁଣିବା ପରେ ସଦ୍ୟ ପ୍ରସ୍ଫୁଟିତ ପଦ୍ମଠାରୁ ଅଧିକ ସତେଜ ଓ ରମଣୀୟ ହେଲା । ରାମ କହିଲେ—

ଯଦି ଏହା ନ ହୋଇଥାନ୍ତା
ରାଜାଙ୍କ ଆଦେଶ
ଆପଣଙ୍କ ଆଦେଶ କି ଟାଳିବାରେ
ଅଛି ମୋ ସାହସ
ଏହି ମୁହୂର୍ତ୍ତରେ ମାତ
ଦିଅଗୋ ବିଦାୟ
ଚାଲିଯିବି ବନକୁ ମୁଁ
ହୋଇ ହସ ହସ ।

ରାମ ସଚେତନ ଥିଲେ ଯେ ପିତା ଅନ୍ତଃପୁରରେ ଅଛନ୍ତି, କିନ୍ତୁ ତାଙ୍କଠାରୁ ବିଦାୟ ନେବା ପାଇଁ ରାମ ଯାଇନାହାନ୍ତି । ପିତା ଥିବା ଦିଗରେ ପ୍ରଣିପାତ କରି ଏବଂ ରାଣୀ କୈକେୟୀଙ୍କୁ ପୁନଶ୍ଚ ସାଷ୍ଟାଙ୍ଗ ପ୍ରଣିପାତ ଜଣାଇ, ମାତା କୌଶଲ୍ୟାଙ୍କ ନିବାସସ୍ଥଳୀକୁ ଗମନ କଲେ ରାମ । ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ ବାଲ୍ମୀକି ରାମାୟଣରେ, ବନବାସରେ ଯିବା ପୂର୍ବରୁ ରାମ ଦଶରଥଙ୍କୁ ସାକ୍ଷାତ କରିଥିଲେ । ସେତେବେଳେ ଦଶରଥ ପୁତ୍ରକୁ କହିଥିଲେ, 'ମୁଁ କୈକେୟୀଙ୍କଦ୍ୱାରା ପ୍ରତାରିତ ହୋଇ ବରଦାନ ଦେବାକୁ ବାଧ୍ୟ ହୋଇଛି । କିନ୍ତୁ ତମେ ଏହାକୁ ଅମାନ୍ୟ କରି ଅଯୋଧ୍ୟାର ରାଜା ହୁଅ ।' ଏପରି ଉପଦେଶ ବାଲ୍ମୀକିଙ୍କ ରାମ ଶୁଣିଲା ପରେ ବାଧ୍ୟହୋଇ ପିତାଙ୍କୁ ପୂର୍ବ ପ୍ରତିଶ୍ରୁତି ନ ଭାଙ୍ଗିବାକୁ ପ୍ରବଚନ ଶୁଣେଇଛନ୍ତି । କମ୍ଭୁନ କିନ୍ତୁ ସୂକ୍ଷ୍ମ କଳାତ୍ମକ ଦୃଷ୍ଟିକୋଣରୁ ଏପରି ଅସୁସ୍ଥକର ବିଦାୟ ଦୃଶ୍ୟ ଉପସ୍ଥାପନା କରିନାହାନ୍ତି । ପ୍ରଥମତଃ—ରାମ ଯଦି ଦୁଃଖଦଗ୍ଧ ପିତାଙ୍କୁ ବିଦାୟ ନମାଗି, ବନବାସରେ ଚାଲିଯାଆନ୍ତି, ତା'ହେଲେ ବିଦାୟର ଯନ୍ତ୍ରଣା ଅଧିକ ନାଟକୀୟ ଓ ତୀବ୍ରତର ହେବ । ଦ୍ୱିତୀୟତଃ—ଦଶରଥଙ୍କ ପୁତ୍ରପ୍ରେମ ଓ ସତ୍ୟପ୍ରେମ ମଧ୍ୟରେ ଯେଉଁ ବିରୋଧାଭାସ ରହିଛି, ଗୋଟିକର ପ୍ରାଧାନ୍ୟରେ ଅନ୍ୟଟିର ଅବମାନନା ଘଟିବ ।

**ପୁଣ୍ୟର ବିଳାପ**

କେହି ତ ନାହାନ୍ତି କାହିଁ
ପଙ୍ଖା କରି ଶୀତଳିବ ପ୍ରାଣ
ଶିର ପରେ ଟେକି ଦେବ
ରାଜକୀୟ ବାସ୍ପଣା ଧବଳ

ନିଷ୍ଠୁର ନିୟତି ଚକ୍ରେ
ଆଗେ ଆଗେ ତାଙ୍କ
ପଛେ ଚାଲୁଥାଇ ପୁଣ୍ୟ
ଜଣ ଜଣ ବିକଳ ରୋଦନ
ଏକା ଏକା ରାମ ଯାଇ ପହଞ୍ଚନ୍ତି
ମାତାଙ୍କ ନିକଟ
ମାତୃତ୍ୱରେ ପୂର୍ଣ୍ଣ ଗ୍ରୀତ
ଉଲ୍ଲାସରେ ଅଧୀର ପରାଣ
ନିଜାତ୍ମି-ତନୟ ଲାଗି
ତାଙ୍କର ଏ ପ୍ରତୀକ୍ଷା ବ୍ୟାକୁଳ
ରାମଙ୍କର ଶିରେ ସିଏ
ଶୋଭେ ହୋଇ ମୁକୁଟ ଉଜ୍ଜ୍ୱଳ ।

ଅତି ବିନମ୍ର ସ୍ୱରରେ ରାମ ତାଙ୍କର ନିର୍ବାସନ ବିଷୟ ମାତାଙ୍କୁ କହନ୍ତି ଏବଂ ଏହା ଶୁଣି ଭାଙ୍ଗି ପଡ଼ନ୍ତି କୌଶଲ୍ୟା ।

ଦୁଇ ହାତରେ ବିଳାପରତ ମାଆଙ୍କୁ ଧରିନେଇ ରାମ ତାଙ୍କୁ ସାନ୍ତ୍ୱନା ଦିଅନ୍ତି । ମାତା କୁହନ୍ତି, 'ଭରତ ଏ ପୃଥିବୀର ରାଜା ହୁଅନ୍ତୁ । ପୁଣ୍ୟର ଉତ୍କର୍ଷ ବିଚାରରେ ସେ ସର୍ବୋତ୍ତମ, ଏପରିକି ତୁମଠାରୁ ମଧ୍ୟ ଅଧିକ । କିନ୍ତୁ ହତବୁଦ୍ଧି ରାଜାଙ୍କ ନିକଟରେ ନତଜାନୁ ପ୍ରାର୍ଥନା କରି ମୁଁ ତୁମର ଏ ନିର୍ବାସନ ବନ୍ଦ କରିବି ।' ଏହା କହି ଦ୍ରୁତଗତିରେ କୈକେୟୀଙ୍କ ପ୍ରାସାଦ ଅଭିମୁଖେ ଗମନ କଲେ କୌଶଲ୍ୟା । ସେଠାରେ ରାଜାଙ୍କୁ ସଂଜ୍ଞାହୀନ ଅବସ୍ଥାରେ ଭୂମି ଉପରେ ପଡ଼ିଥିବାର ଦେଖିଲେ ।

ଇତ୍ୟବସରେ ଋଷି ବଶିଷ୍ଠ ଅପେକ୍ଷାରତ ପ୍ରଜାମାନଙ୍କୁ ଏ ଭୟଙ୍କର ଖବର ଜଣେଇ ଦେଲେ । ଏ ଖବର ଶୁଣି ପ୍ରଜାଗଣ ଉନ୍ମତ୍ତ ଓ ଉତ୍ତେଜିତ ହୋଇ ଦଶରଥଙ୍କ ଏହା ଦୁରଭିସନ୍ଧିପୂର୍ଣ୍ଣ ଅଭିପ୍ରାୟ ବୋଲି କହିବା ସଙ୍ଗେ ସଙ୍ଗେ ଦଶରଥଙ୍କ ବାନପ୍ରସ୍ଥ କେବଳ ଏକ ପ୍ରବଞ୍ଚନା ବୋଲି ମତବ୍ୟକ୍ତ କରିଥିଲେ । ସମସ୍ୱରରେ ସେମାନେ କହିଉଠିଥିଲେ :

ରାମଙ୍କର ସହ ଆମେ ଯିବୁ ବନବାସ
ଶ୍ୱାପଦସଙ୍କୁଳ ବନ ହେବ ଆମ ବାସ
ଜଙ୍ଗଲେ କାଟିବୁ ଦିନ, ଜଙ୍ଗଲେ ନିବାସ
ଅଳ୍ପଦିନେ ସେ ହୋଇବ ସହର ସରସ ।

ପ୍ରଜାମାନେ ସେମାନଙ୍କର ଦୁର୍ଭାଗ୍ୟ ବାବଦରେ ବିଳାପ କରୁଥିଲାବେଳେ ରାମଙ୍କ ନିର୍ବାସନ ଖବର ଶୁଣିବାକୁ ପାଇଲେ ଲକ୍ଷ୍ମଣ । ମୃଗ-ନୟନା ବିମାତାଙ୍କର ନିଜ ପୁତ୍ର ନିମନ୍ତେ ସିଂହାସନ ପାଇଁ ଦଶରଥଙ୍କ ଉପରେ ଯାଦୁକରୀ ପ୍ରଭାବର ଏ ପରିଣାମ ଜାଣି ସେ କ୍ରୋଧରେ ଜଳିବାକୁ ଲାଗିଲେ ।

ଏଠାରେ ମୁଁ ହୋଇ ଠିଆ କରିବି ସଂହାର
ଯିଏ ଆଜି ଯୁଦ୍ଧପାଇଁ ହେବ ଆଗଭର
ମୁକ୍ତ ମୁଁ କରିବି ପୃଥ୍ୱୀ ସେମାନଙ୍କୁ ଛେଦି
ଗୋଟେ ପରେ ଗୋଟେ ଶିର ଦେବି ମୁହିଁ କାଟି
ଶବ ପରେ ଶବ ରହି ଛୁଇଁବ ଆକାଶ
ତାପରେ ଆସିବି ମୁହିଁ ତା'ଶିରେ ମୁକୁଟ
ସେହି ହେବ ରାଜା ଏଠି ଯୋଗ୍ୟ ସେହି ନର
ମୋ ଇଚ୍ଛା ବିରୁଦ୍ଧେ ଯଦି ପାରେ କରି ରଣ ।

ଏହି ସମୟରେ ଲକ୍ଷ୍ମଣଙ୍କ ନିକଟରେ ପହଞ୍ଚି ତାଙ୍କ ଉପରେ ସୁକୋମଳ ବାରେ ଶୀତଳ ଜଳ ସିଞ୍ଚନ କଲେ ରାମ । କବିଙ୍କ ବର୍ଣ୍ଣନାରେ— ନୀଳକୃଷ୍ଣ ମେଘ ପରି ରାମ ଅନିର୍ବାପିତ ଅଗ୍ନି ଉପରେ ବର୍ଷିଗଲେ ।

ଲକ୍ଷ୍ମଣଙ୍କ କ୍ରୋଧ ଶାନ୍ତ କରି ବନବାସ ପାଇଁ ପ୍ରସ୍ତୁତ ହେଲେ ।

**କ୍ରନ୍ଦନ ଧ୍ୱନି**

ଅଯୋଧ୍ୟାର ପ୍ରତ୍ୟେକ ଗୃହରେ ଏ ଦୁଃଖଦ ଦୃଶ୍ୟର ତୀବ୍ରତା ଦୃଶ୍ୟଗୋଚର ହେଲା । ବିସ୍ମୟାଭିଭୂତ, ମୂର୍ଚ୍ଛିତ ନାରୀମାନେ ଗୃହକର୍ମରୁ କ୍ଷାନ୍ତ ହେଲେ ।

ରନ୍ଧନଶାଳାରେ ଆଉ ଉଠିଲାନି ଧୂଆଁ
ଗୃହରୁ ମହକିଲାନି ଚନ୍ଦନର ବାସ୍ନା
ଶୁଆ ଦୁଗ୍ଧ ପିଜାଠାରୁ ହୋଇଲେ ବଞ୍ଚିତ
ଝୁଲଣା ଛୁଇଁଲା ନାହିଁ ନାରୀଙ୍କର ହାତ
ଶିଶୁମାନେ କାନ୍ଦୁଥିଲେ ଶୋଇ ଅବିରତ ।

ଏହା ହିଁ ମହାନ ନାଟକ । ଏଠି ସାହିତ୍ୟ ରନ୍ଧନଶାଳା, ଗୃହ, ଦୁଧପିଜା ଓ ଝୁଲଣା ସମସ୍ତଙ୍କୁ ଚଳେଇ ପାରିଛି । କଥା କୁହାଇ ଦେଇଛି ।

ଅଯୋଧ୍ୟାର ପଥପ୍ରାନ୍ତର ସାଧାରଣତଃ ଗୀତ ଓ ଆନନ୍ଦ ଉଲ୍ଲାସରେ ମୁଖରିତ ଥାଏ । କିନ୍ତୁ ଏବେ ?

ମୃଦଙ୍ଗର ଶବ୍ଦ ଗଲା ହଜି
ବୀଣା ତାର ପଡ଼ିଲେ ଛିଡ଼ି
ଆନନ୍ଦୋଲ୍ଲାସ ଗଲା ପ୍ରକାଶନରୁ ମରି
କ୍ରନ୍ଦନଧ୍ୱନିରେ ଗଲା ରାଜପଥ ପୂରି ।

ରାମ ସୀତାଙ୍କ ନିବାସ ଦିଗକୁ ଗଲେ ; ରାମଙ୍କ ପଛେ ପଛେ ତାଙ୍କୁ ଅନୁସରଣ କରୁଥିଲେ ଶୋକସନ୍ତପ୍ତ ନଗରବାସୀ । ରାମ ତାଙ୍କ ସହ ଅରଣ୍ୟକୁ ଯିବାପାଇଁ ନିବାରଣ କରି କହିଲେ, ସୀତା ବଣର ଉତ୍ତାପ ସହ୍ୟ କରିପାରିବେ ନାହିଁ । ତେଣୁ ସୀତା ତତ୍‌କ୍ଷଣାତ୍ ପ୍ରଶ୍ନ କଲେ—

ତୁମର ବିଦାୟଠାରୁ ଅଧିକ କି ଜ୍ୱାଳାମୟ
ବନସ୍ତର ଜ୍ୱଳନ୍ତ ଯନ୍ତ୍ରଣା ?

ରାମ ଗଣ୍ଡାର ଚର୍ମା ଭିତରେ ହଜିଯାଇଥିବା ବେଳେ, ସୀତା ଅନ୍ତଃପୁରକୁ ଯାଇ ଗଛବକଳ-ପ୍ରସ୍ତୁତ ଏକ ଶାଢ଼ୀ ପରିଧାନ କଲେ । ତାପରେ ରାମଙ୍କ ନିକଟକୁ ଫେରିଆସି ରାମଙ୍କ ହାତକୁ ଚିପିଧରିଲେ ।

ବାଲ୍ମୀକି 'ରାମାୟଣ'ରେ ସୀତା ସ୍ୱ-ଇଚ୍ଛାରେ ସନ୍ନ୍ୟାସୀଙ୍କ ବସ୍ତ୍ର ପରିଧାନ କରିନାହାନ୍ତି । କିନ୍ତୁ କୈକେୟୀଙ୍କ ବଳାତ୍କାରରେ ପିନ୍ଧିବାକୁ ବାଧ୍ୟ ହୋଇଛନ୍ତି । ଏହି ରାମାୟଣରେ ସୀତା ପରିଧାନର କର୍କଶତା ଦେଖି କାନ୍ଦି ଦେଖି ହରିଣ ଥରିଉଠିଲା ପରି ଥରିଉଠନ୍ତି । ବଶିଷ୍ଠ ଓ ଦଶରଥ କୈକେୟୀଙ୍କ ନିଷ୍ଠୁର ଉପହାର ନେଇ ତାଙ୍କୁ ଅଭିଶାପ ଦେଇଛନ୍ତି କିନ୍ତୁ କୈକେୟୀ ସେଥିପ୍ରତି ଭ୍ରୂକ୍ଷେପ କରିନାହାନ୍ତି । ପଶ୍ଚାତ୍ତରେ, କମ୍ବନଙ୍କ ସୀତା ସ୍ୱ-ଇଚ୍ଛାରେ ଓ ଆନନ୍ଦରେ ସ୍ଥୂଳ ବସ୍ତ୍ର ପରିଧାନ କରିଛନ୍ତି ଏବଂ ଏହା କରି ରାମଙ୍କ ସହ ବନବାସ ଯିବାର ଅଭିପ୍ରାୟକୁ ନାଟକୀୟ ମୋଡ଼ ପ୍ରଦାନ କରିଛନ୍ତି ।

### ଅରଣ୍ୟ ଯାତ୍ରା

ଲକ୍ଷ୍ମଣ ଓ ସୀତାଙ୍କ ସହ ରାମ ଅରଣ୍ୟକୁ ଯାତ୍ରା ଆରମ୍ଭ କଲାବେଳେ ସମସ୍ତ ଥିଲା ସୂର୍ଯ୍ୟାସ୍ତ । ସୁମନ୍ତ୍ର ସେମାନଙ୍କୁ ରଥରେ ନେଇ କୋଡ଼ିଏ ମାଇଲ୍ ଅତିକ୍ରମ କଲାପରେ ସେମାନଙ୍କର ଦୃଷ୍ଟିପଥାରୂଢ଼ ହୁଏ ଏକ ସୁବାସିତ କାନନ । ରାମ ରାତ୍ରିଯାପନ ପାଇଁ ରଥରୁ ଓହ୍ଲେଇ ଯାଆନ୍ତି । ରାମ ସେ କାନନରେ ଋଷିଙ୍କ ସହ ବାର୍ତ୍ତାଳାପ କରୁଥିଲାବେଳେ ଦଶ ମାଇଲ ବ୍ୟାସରେ ନଗରବାସୀମାନେ କାନନକୁ ଚତୁଃପାର୍ଶ୍ୱରୁ କମ୍ବଳ ପରି ଘେରିଯାଆନ୍ତି । ସେମାନେ ନଦୀଶଯ୍ୟା, ବାଲିଗୁଡ଼, ସବୁଜଘାସ ଏବଂ ପ୍ରାୟ ପ୍ରତ୍ୟେକ ଜାଗାରେ ଉପନିବେଶ କରନ୍ତି ।

ନଗରବାସୀମାନେ ଶୟନରତ ଥିବାବେଳେ ରାମ ସେମାନଙ୍କ ଅଜ୍ଞାତରେ ଜଙ୍ଗଲର ଅଧିକ ଭିତରକୁ ପ୍ରବେଶ କରିବାକୁ ଠିକ୍ କଲେ । ତେବେ ଯାତ୍ରା ପୂର୍ବରୁ ସୁମନ୍ତଙ୍କୁ ଅଯୋଧ୍ୟା ଫେରିଯିବାକୁ କହିଲେ । ଅଯୋଧ୍ୟା ଫେରି ତାଙ୍କର 'ତିନି ମାତା'ଙ୍କୁ ପ୍ରଣାମ ଜଣାଇବା ସଙ୍ଗେ ସଙ୍ଗେ ଭରତଙ୍କ ଦୁଃଖ ପୋଛି ତାଙ୍କ ସହ ସବୁବେଳେ ରହିବାପାଇଁ ସୁମନ୍ତଙ୍କୁ ଅନୁରୋଧ କଲେ । ଭରତଙ୍କ ପ୍ରତି ରାମଙ୍କର ଏ ଅଭୂତପୂର୍ବ ଅନୁକମ୍ପା ବିଷୟରେ ଉଲ୍ଲେଖ କରି କବି ଲେଖିଛନ୍ତି—

ଏହିପରି କହିଲେ ସେ ଉତ୍ତମ ପୁରୁଷ
ଧର୍ମଶାସ୍ତ୍ରୁ ଓହରି ଯେ ବନେକଲେ ବାସ ।

କମ୍ପନାଙ୍କ ବିଚାରଧାରାରେ, କେବଳ ଶାସ୍ତ୍ର ଅଧ୍ୟୟନ କଲେ ବାସ୍ତବତାର ପରିଚୟ ମିଳେନି, ବରଂ ଏହା ପ୍ରତିବନ୍ଧକ ହୋଇ ଠିଆ ହୁଏ । ଏପରି ଶିକ୍ଷା କେବଳ ମଣିଷର ଅହଂକୁ ପ୍ରୋତ୍ସାହିତ କରିଥାଏ ଏବଂ ମଣିଷ ନିଜଠାରୁ ବାସ୍ତବତାକୁ ବହୁ ଦୂରରେ ରଖିଥାଏ । ଆମେ ଧର୍ମଶାସ୍ତ୍ର ଭିତରକୁ ଯେତିକି ଯେତିକି ପ୍ରବେଶ କରୁ, ସେତିକି ସେତିକି ବାସ୍ତବତା ବିଷୟରେ ସନ୍ଦିହାନ ହୋଇପଡ଼ୁ । ସେଥିପାଇଁ ଈଶ୍ୱର ମଣିଷର ମଙ୍ଗଳ ସାଧନ ପାଇଁ ଧର୍ମଶାସ୍ତ୍ରକୁ ପରିତ୍ୟାଗ କରି ସ୍ୱୀୟ ସତ୍ତ୍ୱର ପ୍ରମାଣ ଦେବା ଉଦ୍ଦେଶ୍ୟରେ ବନବାସ ବରଣ କରିନେଲେ । ବର୍ତ୍ତମାନ ପ୍ରଶ୍ନ ଉଠୁଛି—ଈଶ୍ୱରଙ୍କ ବାସ୍ତବତାକୁ ଏ ବନବାସ କେତେଦୂର ପ୍ରମାଣ କରିପାରୁଛି ?

ଈଶ୍ୱରଙ୍କ ଅବତାର ରାମ ଅଯୋଧ୍ୟା ପରିତ୍ୟାଗ କରି ଘନ ଅରଣ୍ୟକୁ ଯିବାବେଳେ ଏପରି ଏକ ପ୍ରଗାଢ଼ ସମ୍ବେଦନାଦ୍ୱାରା କବିଙ୍କ ମନ ବ୍ୟାକୁଳ ହୋଇଉଠୁଛି । ସୁମନ୍ତଙ୍କୁ ଭରତଙ୍କ ନିକଟରେ ରହିବା ଓ ତାଙ୍କୁ ସାନ୍ତ୍ୱନା ଦେବାପାଇଁ ଅନୁରୋଧ କରିବା ଏକ ରମଣୀୟ ଈର୍ଷା ଓ ଅସୂୟାରହିତ ଅନୁଭୂତି । ରାମଙ୍କ ଦେବତ୍ୱର ସ୍ଥିତିବାଚୀ ପ୍ରମାଣ ହେଉଚି : 'ଏହିପରି କହିଲେ ସେ ଉତ୍ତମ ପୁରୁଷ/ ଧର୍ମଶାସ୍ତ୍ରୁ ଓହରି ଯେ ବନେ କଲେ ବାସ' କବିଙ୍କର ପ୍ରଗାଢ଼ ଅନ୍ତର୍ଦୃଷ୍ଟିରୁ ଜନ୍ମଲାଭ କରିଛି ଏ ପଦ୍ୟାଂଶର ଗାମ୍ଭୀର୍ଯ୍ୟ । ଏହା କୌଣସି କୌଶଳ ନୁହେଁ ବା ଶୈଳୀଗତ ଚାତୁରୀ ନୁହେଁ, ଏହା କବିଙ୍କ ପ୍ରତିଭାର ଔଜ୍ଜ୍ୱଲ୍ୟ ।

## ଶୁଆ ଓ ସାରୀ

ଅରଣ୍ୟରେ ଆନନ୍ଦମୁଖର ଭବିଷ୍ୟତ ପରିକଳ୍ପନା କରୁଥିବା ସୀତାଙ୍କ ଆଡ଼କୁ ଚାହିଁଲେ ସୁମନ୍ତ । ସୁମନ୍ତଙ୍କୁ ସୀତା କହିଲେ, 'ରାଜାଙ୍କୁ ତଥା ମୋର ଶାଶୁମାନଙ୍କୁ ମୋର ପ୍ରଣାମ ଜଣାଇଦେବେ, ତାପରେ ମୋର ଭଉଣୀମାନଙ୍କୁ ମୋର ସୁନା ସାରୀ ଓ ଶୁଆର ଯତ୍ନ ନେବାକୁ କହିବେ ।' ସୀତା ଯେ ବନଜୀବନର କଠିନତା

ଓ ବିପଦଆପଦ ବିଷୟରେ ସାମାନ୍ୟ ଧାରଣା କରିନଥିଲେ, ଆଜି ତାଙ୍କର ସରଳ ଶିଶୁସୁଲଭ, ଚପଳ ଅନୁରୋଧରେ ବିଚଳିତ ହୋଇଉଠିଲେ ସୁମନ୍ତ୍ର । ତାଙ୍କର କରୁଣ ସରଳତା ବିଷୟରେ ଭାବୁଭାବୁ ସୁମନ୍ତ୍ରଙ୍କ ଆଖିରେ ଲୁହ ଜମି ଆସିଲା । ସୀତା ଆଶ୍ଚର୍ଯ୍ୟ ହୋଇ ଭାବିଲେ, ସୁମନ୍ତ୍ରଙ୍କ ମନରେ ଆଘାତ ଦେଇନାହାନ୍ତି ତ ! ସେ ଭାବିବାକୁ ଲାଗିଲେ, 'ମୁଁ ତ ପକ୍ଷୀମାନଙ୍କ ଯତ୍ନ ନେବା କଥା କହିଲି । ତେବେ ସେ କାନ୍ଦୁଛନ୍ତି କାହିଁକି ?' ଏହାର କୌଣସି କାରଣ ପାଇ ନପାରି ସୀତା ମଧ୍ୟ କାନ୍ଦିଉଠିଲେ ।

ଭାରି ହୃଦୟରେ ରାମଙ୍କଠାରୁ ବିଦାୟ ନେଇ, ସୁମନ୍ତ୍ର ଏକାକୀ ଅଯୋଧ୍ୟାକୁ ରଥ ବାହିନେଲେ ।

**ଦିବ୍ୟଚନ୍ଦ୍ର**

ନଗରବାସୀଙ୍କୁ ଶୟନରତ ଅବସ୍ଥାରେ ଛାଡ଼ି ଜଙ୍ଗଲ ଭିତରକୁ ଚାଲିଯିବାର ସୁଯୋଗ ନେଲେ ରାମ । ତେବେ ଏ ସୂଚୀଭେଦ୍ୟ ଅନ୍ଧକାର ଭିତରେ ରାମଙ୍କୁ ପଥ ଦେଖାଉଚି କିଏ ? କବିଙ୍କ ଭାଷାରେ—

ସୀତାଙ୍କର ସାଧ୍ୱୀଧର୍ମ ନିଜର ପୌରୁଷ<br>
ଭ୍ରାତାଙ୍କର ପୁରୁଷତ୍ୱ ନିଜର ଧନୁଷ<br>
ଏଇମାନେ ଥିଲେ ସବୁ ରକ୍ଷାର କବଚ<br>
ମାଟିପରେ ଈଶ୍ୱରଙ୍କ ନିଜସ୍ୱ ରକ୍ଷକ<br>
ଅନ୍ଧାର ରାତିରେ ଯେବେ ଚାଲୁଥିଲେ ପଥ ।

ତିନିହେଁ ଅନ୍ଧକାର ମଧ୍ୟରେ ଆଗକୁ ଯାଉଥିବାବେଳେ, ପ୍ରତିବନ୍ଧକ ହୋଇ ସାମ୍ନାରେ ଠିଆ ହୋଇଥିଲା ଅନ୍ଧାର । ଏ ଅନ୍ଧାର ଯେପରି ରାକ୍ଷସ ଏବଂ ପାପର ସହୋଦରଙ୍କ ସହ ଷଡ଼ଯନ୍ତ୍ର କରି ତିନିଙ୍କ ଯାତ୍ରାରେ ବାଧା ଦେବାକୁ ଆଗେଇ ଆସିଛି । କମ୍ବିନ ଏଠି ଭଲ ଓ ମନ୍ଦ ମଧ୍ୟରେ ଆସନ୍ନ ମୁକାବିଲା ବିଷୟରେ କହୁଛନ୍ତି :

ହଟାଇ କାଳି ଅନ୍ଧାର<br>
ଦିବ୍ୟ ଜହ୍ନ ଦିଶିଲେ ଗଗନେ<br>
ଆକାଶକ କାଳିଅଛି ଲିଶୁନଟି<br>
ତୋଳିଧରି ନିଜର ହାତରେ ।

ଅନ୍ଧକାର ମଧ୍ୟରେ ଯାତ୍ରା କଲାବେଳେ ପାପ ବିରୁଦ୍ଧରେ ଧର୍ମଯୁଦ୍ଧ ପାଇଁ ପାଠକମାନଙ୍କୁ ଅତି ସୂକ୍ଷ୍ମ ଭଙ୍ଗୀରେ ଅଂଶୀଦାର କରିଛନ୍ତି କବି । ଠିକ୍ ସମୟରେ ଉଦୟ ହୋଇଥିବା ଜହ୍ନକୁ 'ଦିବ୍ୟ' ଚନ୍ଦ୍ର କହି ଆମ ମନର ଆକସ୍ମିକ ଆଶଙ୍କି

ତଥା କୃତଜ୍ଞତା'ର ଭାଷା ବ୍ୟକ୍ତ କରିଛନ୍ତି କମ୍ପନ । ଏ ପୁରାଣ ଆମମାନଙ୍କୁ ଚିରନ୍ତନ ନିୟମ, ଶୃଙ୍ଖଳା ଓ ପୁଣ୍ୟ ବିଷୟରେ ନିରବଚ୍ଛିନ୍ନଭାବେ ସଚେତନ କରାଇଥାଏ ।

ରାତିର ଆକାଶକୁ ଭେଦ କରି ଉଠିଥିବା ଚନ୍ଦ୍ରର କିରଣରେ ରାମ, ଲକ୍ଷ୍ମଣ ଓ ସୀତାଙ୍କ ଚାଲୁଥିବାର ଦୃଶ୍ୟ କବିଙ୍କୁ ରୂପ୍ୟାମୂର୍ତ୍ତି ପରି ମନେ ହୋଇଛି । କଳାରଙ୍ଗରେ ଧୋଇ ହୋଇ ପଡ଼ିଥିବା ପାହାଡ଼ ପରି ଦିଶୁଥିଲେ ରାମ । ଲକ୍ଷ୍ମଣ ମଧ୍ୟ ଅନୁରୂପ ଏକ ପାହାଡ଼ ପରି ଦିଶୁଥିଲେ କିନ୍ତୁ ମନେ ହେଉଥିଲା ଯେପରି ଏ ପାହାଡ଼ଟି ସୁନାରେ ମଣ୍ଡିତ ହୋଇଛି । ଜହ୍ନ କିରଣରେ ଭିଜିଯାଇଥିବା ପୃଥିବୀ ଦିଶୁଥିଲା, ସତେ ଯେପରି ଜହ୍ନ ଧଳାରଙ୍ଗର ତୁଳା ବିଛେଇ ଦେଇଛି ଭୂମି ଉପରେ, ଯେପରି ଜଙ୍ଗଲରେ ଚାଲିଲାବେଳେ ସୀତାଙ୍କର କୋମଳ ପାଦକୁ କଷ୍ଟ ହେବନି । ଚିତ୍ରକଳାକୁ ଏପରି କମନୀୟ କାବ୍ୟିକ ପରିବେଶରେ ଛାଡ଼ି, କମ୍ପନ ଆମମାନଙ୍କୁ ସୁମନ୍ତ୍ରଙ୍କ ସହ ଅଯୋଧ୍ୟା ନେଇଯାଇଛନ୍ତି ।

ଲୁହ-କୂପ

ସୁମନ୍ତ୍ର ଅଯୋଧ୍ୟା ପହଞ୍ଚିଲାରୁ ଦଶରଥ ପଚାରିଲେ, 'ଏବେ ରାଜପୁତ୍ର ନିକଟରେ ନା ଦୂରରେ ? ସୁମନ୍ତ୍ର କହିଲେ 'ଏବେ ରାଜପୁତ୍ର ବହୁଦୂର ବାଉଁଶ ଜଙ୍ଗଲକୁ ଚାଲିଯାଇଛନ୍ତି' । ଏହାଶୁଣି ଦଶରଥ କହିଲେ, 'ଚାଲିଯାଇଛନ୍ତି' । ଏହା କହି ଅବିଳମ୍ବରେ ଇହଧାମ ତ୍ୟାଗ କଲେ ଦଶରଥ । ଦଶରଥଙ୍କ ଜୀବନର ଏ ଦୁଃଖାତ୍ମକ ଅନୁଭୂତି କମ୍ପନଙ୍କୁ ଗଭୀରଭାବେ ଆନ୍ଦୋଳିତ କରିଛି ଏବଂ ଏସବୁ ଅନୁଭୂତିକୁ ନେଇ ସେ ଏକ ଅଶ୍ରୁ-କୂପ ଖନନ କରିଛନ୍ତି ।

ସ୍ୱାମୀହରା ପତ୍ନୀମାନଙ୍କର ଦଶରଥଙ୍କ ମୃତ ଦେହକୁ ଘେରିଧରି କାନ୍ଦୁଥିବାର ଦୃଶ୍ୟ ଦେଖି କମ୍ପନ ଦଶରଥଙ୍କ କୃତି ଉପରେ ଗଭୀର ଅନୁଚିନ୍ତା ପ୍ରକଟ କରିଛନ୍ତି । ନିଜ ଜୀବନ ବିନିମୟରେ ମଧ୍ୟ ଦଶରଥ ନିଜର ପ୍ରତିଶ୍ରୁତି ପାଳନ କରିଛନ୍ତି । ଆଦର୍ଶ ପାଇଁ ପ୍ରାଣବଳି ଦେଇ ଚିରନ୍ତନ ଜୀବନ ହାସଲ କରିପାରିଛନ୍ତି । ଶରୀର-ନୌକାରେ ବସି ଦଶରଥ ଜୀବନ-ସମୁଦ୍ର ପାର ହୋଇ ଦିବ୍ୟଜୀବନର କୂଳଦେଶରେ ନିର୍ବିଘ୍ନରେ ପହଞ୍ଚି ପାରିଛନ୍ତି । ମୋହମାୟାରୂପୀ ଗ୍ରାହମାନେ ତାଙ୍କର ଅନିଷ୍ଟ କରିପାରିନାହାନ୍ତି; ଏ ନୌକା ବିପଦଶୂନ୍ୟ ହୋଇ ଯାତ୍ରୀକୁ ଚରମସୀମାରେ ପହଞ୍ଚେଇ ଦେଇଚି । ଏପରି କରି ଦଶରଥ ନିଜର ସମୁଦ୍ର-ଯାତ୍ରାର ପରାକାଷ୍ଠା ଦେଖେଇ ପାରିଛନ୍ତି । ସ୍ତ୍ରୀମାନେ ସ୍ୱାମୀଙ୍କର ଶରୀରକୁ ଧରିଥିବାର ଦୃଶ୍ୟ ଦେଖିଲେ ମନେ ହେଉଥିଲା ସେମାନେ ଯେପରି ଏ ବିଶ୍ୱାସପୂର୍ଣ୍ଣ ନୌକାରେ ବସିଛନ୍ତି; ତାଙ୍କର ଆତ୍ମବିଶ୍ୱାସ ଯେ, ଏ ନୌକା ତାଙ୍କୁ ସେଇ ଲକ୍ଷ୍ୟସ୍ଥଳରେ ଠିକ୍ ପହଞ୍ଚେଇଦେବ ।

## ପର୍ଯ୍ୟଟନ

ଅଯୋଧ୍ୟାରେ ଘଟି ଯାଇଥିବା ଦୁଃଖାନ୍ତକ ଘଟଣାର ଅଜ୍ଞତାରେ ରାମ ଓ ସୀତା ବେଶ୍ ଆନନ୍ଦରେ ଅରଣ୍ୟରେ ପରିଭ୍ରମଣ କରୁଥିଲେ । ଉତ୍ଫୁଲ୍ଲ ଚିତ୍ତରେ ସେମାନେ ପ୍ରକୃତିର ବୈଚିତ୍ର୍ୟ ଉପଭୋଗ କରୁଥିଲେ । ଅରଣ୍ୟରେ ଏମିତି ଭ୍ରମଣ କରିବାରେ ସେମାନେ ଦାୟିତ୍ୱମୁକ୍ତ ଥିଲେ—ତାଙ୍କୁ ଏହା ଏକ ବନଭୋଜି ପରି ପ୍ରତୀତ ହେଉଥିଲା । ଏହି ଅନୁଭୂତି କମ୍ବନ କେତୋଟି ଅତୀବ ସୁନ୍ଦର ଓ ମର୍ମସ୍ପର୍ଶୀ କବିତାରେ ଉତ୍କୀର୍ଣ୍ଣ କରିଛନ୍ତି । ତାଙ୍କ ବର୍ଣ୍ଣନାରେ, ରାମ ସୀତାଙ୍କ ସହ ଭ୍ରମଣ କରୁଥିଲାବେଳେ ମନେ ହେଉଥିଲା, ଯେତେ ଯେପରି ଭାସମାନ ମେଘଖଣ୍ଡ ଝଲସୁଥିବା ବିଜୁଳି ସହ ବିଚରଣ କରୁଛନ୍ତି । ଏହାପରେ ରାମ ଗଙ୍ଗାନଦୀର ଉତ୍ତର ପାର୍ଶ୍ୱସ୍ଥ କୂଳରେ ପହଞ୍ଚିଛନ୍ତି । ସେଠି ଋଷିମାନଙ୍କ ସହ କଥୋପକଥନରେ ବ୍ୟସ୍ତ ଥିଲାବେଳେ ରାମଙ୍କୁ ଆସି ପ୍ରଣାମ ଜଣାଇଛନ୍ତି ଶବରମୁଖ୍ୟ ଗୁହ । ଗୁହ ଥିଲେ ଭୟଙ୍କର ଧନୁଶ ଖଚିତ ଏକ ସହସ୍ର ନୌକାର ଅଧିକାରୀ—ପଥରରେ ଖୋଦେଇ ହୋଇଥିଲା ତାଙ୍କର କାନ୍ଧ; କୃଷ୍ଣବର୍ଣ୍ଣ ଆବଲୁସ୍ କାଠରେ କଟା ହୋଇଥିଲା ଉରୁ । ଗୁହ ଥିଲେ ଜଣେ ଦୀର୍ଘକାୟ ବ୍ୟକ୍ତି—ତାଙ୍କର ଉଚ୍ଚତା ଗଙ୍ଗାନଦୀର ଗଭୀରତା ମାପିବାରେ ସମର୍ଥ । ତାଙ୍କ କଟି-ଦେଶରୁ ଓହଳି ଆସିଥିଲା ଚମ ଖଣ୍ଡେ; ତାଙ୍କର କମର ଚତୁଃପାର୍ଶ୍ୱରେ ବନ୍ଧା ହୋଇଥିଲା ଚକ୍‌ଚକ୍ ବାଘ ଲାଞ୍ଜର ପଟି । ସେ ମାଳଗୁନ୍ଥିତ ହାରଟିଏ ପିନ୍ଧିଥିଲେ; ସେଗୁଡ଼ିକ ଧାଡ଼ିଏ ଦାନ୍ତ ପରି ଦିଶୁଥିଲେ । ତାଙ୍କର ପାଦଭୂଷଣ ଧାଡ଼ିଏ ଉପଳଖଣ୍ଡରେ ଖଞ୍ଜା ଯାଇଥିଲା । ତାଙ୍କର କେଶଗୁଚ୍ଛ ଅନ୍ଧାରର ତେଜ ପରି ଦିଶୁଥିଲା । ସିଂହ ପରି ତାଙ୍କ ବହଳ ଆଖିପତା ଧାନଶିଂଷାରେ ଗୁନ୍ଥାହୋଇ ପରି ଜଣାଯାଉଥିଲା । ତାଙ୍କ ପଟିରେ ଖୋସା ହୋଇଥିଲା ରକ୍ତ ଜୁଡ଼ୁବୁଡ଼ୁ ଛୁରୀଟିଏ । ବିଷାକ୍ତ ନାଗ ସର୍ପ ପରି ସେ ଦିଶୁଥିଲେ ଅତି ଭୟଙ୍କର । ଅତି ବିହ୍ୱଳ ହୋଇ ଅସ୍ପଷ୍ଟ ଶବ୍ଦରେ କଥା କହୁଥିଲେ ଗୁହ । ତାଙ୍କ କଟି ଇନ୍ଦ୍ରଙ୍କ ସ୍ୱର୍ଗ ବଜ୍ରମ ପରି ଅତି ଶକ୍ତ ଥିଲା । 'ମିଥ୍ୟା ବାକ୍ୟାଳାପରେ ଅପାରଙ୍ଗମ' 'ନିର୍ମଳ ହୃଦୟ' ଏବଂ 'ମାଆଠାରୁ ଅଧିକ ସ୍ନେହଶୀଳ' ଗୁହ ରାମଙ୍କ ସମ୍ମୁଖରେ ମତ୍ସ୍ୟ ଏବଂ ମଧୁ ଉପହାର ରଖିଲେ ।

କମ୍ବନଙ୍କ ରାମ ଓ ଋଷିଗଣ ଶାକାହାରୀ ଥିଲେ, ଅବଶ୍ୟ ବାଲ୍ମୀକିଙ୍କର ରାମ ଆମିଷ ଭକ୍ଷଣ କରୁଥିଲେ । ଏମାନେ ଶାକାହାରକୁ ପୁଣ୍ୟ ଓ ସଂସ୍କୃତିର ଚରମ ନିଦର୍ଶନ ଭାବେ ଗ୍ରହଣ କରୁଥିଲେ । ଶବର ରାଜାଙ୍କ ମତ୍ସ୍ୟ ଭକ୍ଷଣ କରିବାର ଅନୁରୋଧ ସମବେତ ସନ୍ନ୍ୟାସୀଙ୍କୁ ମର୍ମାହତ କରିଥିଲା ଏବଂ ଏହା ସେମାନଙ୍କୁ ଅପମାନସୂଚକ ମନେ ହୋଇଥିଲା । ହସ ହସ ବଦନରେ ରାମ ଏହା ଗୁହଙ୍କ 'ପ୍ରେମସିକ୍ତ' ଉପହାର କହି ଏ ଖାଦ୍ୟ ପବିତ୍ର ଏବଂ ଏହାକୁ ଆନନ୍ଦରେ ଭୋଜନ କରାଯାଇପାରେ ବୋଲି ମନ୍ତବ୍ୟ ଦେଇଥିଲେ । ଗୁହ ରାମଙ୍କୁ ଅଯୋଧ୍ୟା ଛାଡ଼ି ଆସିବାର କାରଣ ପୁଚ୍ଛା କଲେ ।

ଲକ୍ଷ୍ମଣ ତାଙ୍କୁ ଦୁଃଖପ୍ରଦ କାହାଣୀ ଶୁଣାଇଲେ । ଏହା ଶୁଣି ଗୁହଙ୍କର ଆଖିରେ ଲୁହ ଜମି ଆସିଥିଲା; ଗୁହଙ୍କର ଗଭୀର ଅନୁରାଗ ଦେଖି ରାମଙ୍କ ପ୍ରାଣ ଆନ୍ଦୋଳିତ ହୋଇ ଉଠିଲା ଏବଂ ସେ ଗୁହଙ୍କୁ ଭାଇ ଭାବେ ଗ୍ରହଣ କରି ନେଲେ । ରାମ କହିଲେ :

ଆଜିଯାଏଁ ଆମେ ଥିଲୁ ଭାଇ ତିନି ଗୋଟି
ଏବେଠାରୁ ପାଞ୍ଚଭାଇ ହେଲେ ଆମେ ମିଳି;
ଭାତୃଭାବ କେବେ କ'ଣ ହୁଏ ସୀମାବଦ୍ଧ
ପ୍ରେମ ତ ବଢ଼ାଏ ସଂଖ୍ୟା, କରେନା ଆବଦ୍ଧ ।

କବିଙ୍କର ଏହା ଏକ ସୁନ୍ଦର ଅନୁଚିନ୍ତା : ଭାତୃତ୍ୱ ଜନ୍ମରେ ନୁହେଁ, ବରଂ ପ୍ରେମରେ ପ୍ରତିଷ୍ଠିତ ହୋଇଥାଏ । ପ୍ରେମ ବିକଶିତ ହେଲେ, ଭାତୃତ୍ୱର ସୀମା ବିସ୍ତାରିତ ହୋଇଥାଏ- ହୋଇଯାଏ ଅସୀମ ।

ଗୁହଙ୍କଠାରୁ ବିଦାୟ ନେଇ ତିନିହେଁ ଚିତ୍ରକୂଟ ପର୍ବତରେ ସକାଳୁ ସକାଳୁ ପହଞ୍ଚିଗଲେ । ନଦୀକୂଳର ଗଛଗୁଡ଼ିକ ତଳେ ବସି ବସି ସେମାନେ ସମଗ୍ର ଦିନଟିକୁ ଅତିବାହିତ କଲେ । ବର୍ତ୍ତମାନ ସନ୍ଧ୍ୟା ।

## ପ୍ରେମର ପାବନତା

ପାର୍ବତୀୟ ଜଳାଶୟ ନିକଟରେ ତିନିହେଁ ଧ୍ୟାନମଗ୍ନ ଥିଲାବେଳେ ଅନ୍ଧକାର ନଇଁ ଆସିଥିଲା । ଲକ୍ଷ୍ମଣ ରାମ ଓ ସୀତାଙ୍କୁ ପାହାଡ଼ ଢାଲୁରେ ଥିବା ଆଶ୍ରମକୁ ନେଇଗଲେ । ଆଶ୍ରମ-କୁଟୀରଟିକୁ ନିଜ ହାତରେ ତିଆରି କରିଥିଲେ ଲକ୍ଷ୍ମଣ । ପାହାଡ଼ ତଳର ବାଉଁଶ ଗଛକୁ ସମାନ ଲମ୍ବରେ ଖଣ୍ଡ ଖଣ୍ଡ କାଟି ଭୂଇଁ ଉପରେ ସେ ଠିଆ କରିଥିଲେ । ଏହାପରେ ବାଉଁଶ ଖଣ୍ଡକୁ ଧାଡ଼ି ଧାଡ଼ି ପୋତି, ତା' ଉପରେ ଗୁଡ଼ିକର ଏକ ଆଧାର ତିଆରି କରିଥିଲେ ଏବଂ ସେଗୁଡ଼ିକୁ ଭୂଇଁରେ ପୋତା ହୋଇଥିବା ଖମ୍ବରେ ବାନ୍ଧି ଦେଇଥିଲେ । ଏହାପରେ ଗହଳ ଶାଗୁଆନ ପତ୍ରରେ ଗୁଡ଼ିକୁ ଛାଉଣି କରି ଏହା ଉପରେ କେତେକ ନଳ ଖଞ୍ଜିଥିଲେ । ମାଟିର ଏକ କାନ୍ଥ ତିଆରି କରି ଚଟାଣକୁ ମାଟି ଓ ପାଣି ଦ୍ୱାରା ଲିପିଥିଲେ । ଏହାପରେ କୁଟୀରକୁ ଲାଗିକରି ଉପରୋକ୍ତ ପଦାର୍ଥ ବ୍ୟବହାର ପୂର୍ବକ ସୀତାଙ୍କ ପାଇଁ ଏକ ବ୍ୟକ୍ତିଗତ କୋଠରୀ ତିଆରି କରିଥିଲେ । କୋଠରୀର କାନ୍ଥଗୁଡ଼ିକ ନାଲି ମାଟିରେ ସଜ୍ଜିତ କରି, ଏହାକୁ ଜଙ୍ଗଲୀ ଝରଣାରୁ ସଂଗ୍ରହ କରିଥିବା ଚକ୍‌ଚକ୍ ପଥରଦ୍ୱାରା ଖଞ୍ଜିଥିଲେ ଲକ୍ଷ୍ମଣ ।

ଲକ୍ଷ୍ମଣ-ନିର୍ମିତ କୁଟୀରକୁ ନିରୀକ୍ଷଣ କରୁ କରୁ ରାମ ଆନନ୍ଦିତ ହେଲେ । ସୀତା ଓ ଲକ୍ଷ୍ମଣଙ୍କ ପ୍ରେମ ତାଙ୍କ ହୃଦୟକୁ ଆନ୍ଦୋଳିତ କଲା । ଯେଉଁ ବ୍ୟକ୍ତି ସବୁ ହରେଇଥାଏ, ସେ ଏପରି ପ୍ରେମ ପାଇଥାଏ ବୋଲି ରାମ ମନେକଲେ :

ଜନକ ଦୁଲାଳୀ ସୀତା ପାଦ ସୁକୋମଳ
ଘୃରୁଛନ୍ତି ଆଜି ସିଏ ଜଙ୍ଗଲର ପଥ
ମୋ ଜନନ୍ଥ ଭ୍ରାତା ନିଜ ଦକ୍ଷ ହାତ ନେଇ
କରିଛନ୍ତି ଏ କୁଟୀର ନିର୍ମାଣ ତ ସେଇ
ପୃଥ୍ୱୀରେ କ'ଣ ଅଛି ଏମନ୍ତ ଜନନି
ପାଇନାହିଁ କିଏ କେବେ ହରାଇ ସର୍ବସ୍ୱ
ଏହାପରେ ରାମ ପୁ ଛୁରିାକଲେ 'ହେ ଲକ୍ଷ୍ମଣ !
କୁହ ଭ୍ରାତ, ତମେ କେବେ ଶିଖିଥିଲ କୁଟୀର ନିର୍ମାଣ ?'

ଏହା କହିଲାବେଳେ ରାମଙ୍କ ପଦ୍ମ-ନେତ୍ରରେ ଶିଶିର ବିନ୍ଦୁ ସମ ଲୁହବିନ୍ଦୁ ଜମି ଆସିଥିଲା । ରାମ ଭାବିଲେ, ପୁଣ୍ୟ ପ୍ରତିଷ୍ଠାରେ ସେ ଯେଉଁ ଖ୍ୟାତି ଅର୍ଜନ କରିଛନ୍ତି, ଏହା ତାଙ୍କ ନିଜ ତ୍ୟାଗ ଉପରେ ପର୍ଯ୍ୟବସିତ ନୁହେଁ, ଏହା ବରଂ ଲକ୍ଷ୍ମଣଙ୍କ ତ୍ୟାଗ ଉପରେ ପ୍ରତିଷ୍ଠିତ । ଏପରି ଏକ ପ୍ରେମର ପାବନ ଆବେଗରେ ଗୁଡ଼ି କମ୍ପନ ଆମକୁ ଭରତଙ୍କ ନିକଟକୁ ନେଇ ଯାଇଛନ୍ତି । ଭରତ ସେତେବେଳେ ନିଜର ଅଜାଙ୍କ ଘର, କେକୟର ରାଜପ୍ରାସାଦରେ ଅବସ୍ଥାନ କରୁଥାନ୍ତି ।

## ଅତ୍ୟାଚାରୀ ଶୋକ

ରାଜାଙ୍କଠାରୁ ଦୁଇଟି ବର ପାଇ ଶାନ୍ତିରେ ଶୋଇଥିଲେ କୈକେୟୀ । ଶଯ୍ୟା ତ୍ୟାଗକଲା ପରେ ଯଥାଶୀଘ୍ର ଭରତଙ୍କୁ ଅଯୋଧ୍ୟାକୁ ଡାକି ଆଣିବା ପାଇଁ କେକୟକୁ ଖବର ପଠାଇଲେ । ଭରତ ଖବର ପାଇ କାଳ ବିଳମ୍ବ ନକରି ଅଯୋଧ୍ୟା ଅଭିମୁଖେ ଯାତ୍ରା ଆରମ୍ଭ କଲେ । ରାମଙ୍କ ବନବାସ ଓ ଦଶରଥଙ୍କ ମୃତ୍ୟୁ ବିଷୟରେ ସେ ପୂରାପୂରି ଅଜ୍ଞ ଥିଲେ ।

ସାରା ସହର ନୀରବ, ନିସ୍ତବ୍ଧ ଥିବାର ଲକ୍ଷ୍ୟ କଲେ ଭରତ । ଭୟଙ୍କର ବିପଦ ଆଶଙ୍କା କରି ସେ ପ୍ରଥମେ ରାଜପ୍ରାସାଦରେ ପ୍ରବେଶ କଲେ । କିନ୍ତୁ କେଉଁଠି ରାଜାଙ୍କ ଦର୍ଶନ ପାଇଲେ ନାହିଁ । କୈକେୟୀଙ୍କ ପାଖକୁ ଯାଇ ରାଜା କେଉଁଠି ଅଛନ୍ତି ବୋଲି ପ୍ରଶ୍ନ କଲେ । କୈକେୟୀ ପୁତ୍ରଙ୍କୁ ଆଲିଙ୍ଗନ ପୂର୍ବକ କହିଲେ, 'ବ୍ୟଥିତ ହୁଅନା ପୁତ୍ର ! ତମ ପିତା ସ୍ୱର୍ଗାରୋହଣ କରିଛନ୍ତି ।' ମାତାଙ୍କ ଉତ୍ତରର ଶୀତଳତାରେ କୌଣସି ଚକ୍ରାନ୍ତ ଥାଇପାରେ ବୋଲି ସନ୍ଦେହ କଲେ ଭରତ । ତେବେ ଦଶରଥଙ୍କ ମୃତ୍ୟୁ ଖବର ତାଙ୍କୁ ଗଭୀର ଭାବେ ବିଚଳିତ କରିଥିଲା ଓ ସେ ସଂଜ୍ଞା ହରାଇ ବସିଲେ । କିଛି କ୍ଷଣ ପରେ ସଂଜ୍ଞା ଫେରିପାଇ ସେ ଚିତ୍କାର କରି କାନ୍ଦି ଉଠିଲେ । ଏହାପରେ ସ୍ୱାଭାବିକ ଭାବେ ଶାନ୍ତ୍ୱନା ପାଇଁ ସେ ରାମଙ୍କୁ ସ୍ମରଣ କଲେ । ସେ କହିଲେ, 'ଅନନ୍ତ ଅସୀମ ପୁଣ୍ୟର ଅଧିକାରୀ ରାମ ହେଉଛନ୍ତି ମୋର ପିତା, ମାତା, ଭ୍ରାତା ଓ ପ୍ରଭୁ ।

ମୁଁ ତାଙ୍କର ପବିତ୍ର ପାଦ ତଳେ ସାଷ୍ଟାଙ୍ଗ ପ୍ରଣିପାତ ନକଲା ପର୍ଯ୍ୟନ୍ତ ଏପରି ଏକ ଅତ୍ୟାଗ୍ରଣ୍ଣ ଶୋକ କବଳରୁ ମୁକ୍ତି ପାଇ ପାରିବି ନାହିଁ ।' ରାମଙ୍କ ପ୍ରତି ଭରତଙ୍କ ଏପରି ଭକ୍ତିଭାବ ଦେଖି କୈକେୟୀ କ୍ରୋଧାନ୍ୱିତ ହୋଇପଡ଼ିଲେ । ବଜ୍ରନିର୍ଘୋଷ କଣ୍ଠରେ ସେ କହିଲେ :

ସଙ୍ଗେ ଧରି ଦୁଇଜଣ, ପତ୍ନୀ ଓ ଅନୁଜ
ଜଙ୍ଗଲରେ ଅଧିବାସ କରୁଛନ୍ତି ରାମ ।

କୈକେୟୀଙ୍କ ଏପରି ଅଦୃଷ୍ଟପୂର୍ବ ଉଚ୍ଚାରଣ ଭରତଙ୍କୁ ଉତ୍ତେଜିତ କରିଥିଲା । ଭରତ ପ୍ରଶ୍ନ କଲେ, 'ଆଉ କେତେ ଷଡ଼ଯନ୍ତ୍ର ଅଛି ଯାହା ଶୁଣିବ, ଆଉ କ'ଣ ଦୁଃଖ ଅଛି ମୋ କର୍ଣ୍ଣ ଶୁଣିବ ?' 'ରାଜା କାହିଁକି ପ୍ରାଣତ୍ୟାଗ କଲେ ? ଏବଂ କାହିଁକି ରାମ ଅରଣ୍ୟକୁ ଗଲେ ?' କୈକେୟୀ ଅପୂର୍ବ ଉତ୍ସାହରେ ଆରମ୍ଭ କଲେ, 'ଗୋଟିଏ ବର ପ୍ରୟୋଗ କରି ମୁଁ ରାମଙ୍କୁ ବନକୁ ନିର୍ବାସିତ କଲି ଏବଂ ଅନ୍ୟଟିରେ ତମ ପାଇଁ ଏ ରାଜ୍ୟ ଲାଭକଲି । ଏସବୁ ସହ୍ୟକରି ନପାରି ତମ ପିତା ସ୍ୱର୍ଗବାସୀ ହେଲେ ।'

ଏହି ଶବ୍ଦ ଶୁଣିବା ପୂର୍ବରୁ ଭରତଙ୍କ ହାତ ଯାହା ମଥା ଉପରେ ସମ୍ମାନ ସୂଚକ ଭାବେ ଯୋଡ଼ି ହୋଇ ରହିଥିଲା, ଏହା ଶୁଣିବା ପରେ :

ଯୋଡ଼ ହସ୍ତ ଖସି ଆସି ରହିଲା କର୍ଣ୍ଣରେ
ଉପର ଓ ତଳ ହୋଇ
ଭ୍ରୁରୁ ଖାଲି ନାଚଲେ କ୍ରୋଧରେ
ନିଃଶ୍ୱାସରୁ ବାହାରିଲା ହୁଳା ହୁଳା ନିଆଁ
ବୋହିଲା ରୁଧିର ଚକ୍ଷୁ
ଗଣ୍ଡଦେଶ କରିଲା ସେ ଆର୍ଦ୍ର ।

ଉପରୋକ୍ତ ପଦ୍ୟାଂଶରେ କମ୍ପନ କ୍ରୋଧର ଜୈବିକ ଲକ୍ଷଣକୁ ଅତି ନାଟକୀୟ ଭଙ୍ଗୀରେ ପ୍ରକାଶ କରିଛନ୍ତି । କ୍ରୋଧର ସଙ୍ଗଠନ ଏତେ ଜୀବନ୍ତ ଭାବେ କ୍ୱଚିତ ସମ୍ଭବ ହୋଇଥାଏ । ଭରତଙ୍କ ବିଚାରରେ, ଷଡ଼ଯନ୍ତ୍ର କରି ସିଂହାସନ ହାସଲ କରିବା ଏକ ଅପବିତ୍ର, ଅଧର୍ମମୂଳକ କାର୍ଯ୍ୟ, କିନ୍ତୁ କୈକେୟୀଙ୍କୁ ସେଇ ମୁହୂର୍ତ୍ତରେ ହତ୍ୟା ନକରି ଛାଡ଼ିଦେବା ମଧ୍ୟ ଅନୁରୂପ ଅପବିତ୍ର କାମ । କିନ୍ତୁ କୈକେୟୀଙ୍କୁ ଆଘାତ ଦେବାର ଦୁର୍ବାର ଇଚ୍ଛାକୁ ଦମନ କରିଛନ୍ତି ଭରତ; କାରଣ ଏହାଦ୍ୱାରା ରାମଙ୍କୁ କ୍ରୋଧାନ୍ୱିତ କରିବାର ଆଶଙ୍କା ଥିଲା ତାଙ୍କର ।

ହତାଶ ହୋଇ ଭରତ ଏ ନୀଚ କୁଚକ୍ରୀ ଦୁନିଆର ମୂଲ୍ୟବୋଧର ଅବକ୍ଷୟ ବିଷୟ ଚିନ୍ତା କରୁଥିଲେ । କିନ୍ତୁ ପର ମୁହୂର୍ତ୍ତରେ ଶାନ୍ତ ଅବସ୍ଥାରେ ରାମ ଓ

ଦଶରଥଙ୍କ ଅପୂର୍ବ ତ୍ୟାଗ ବିଷୟ ସ୍ମରଣ କଲେ । ପୁଣ୍ୟ ଉପରେ ତାଙ୍କର ଅତୁଟ ବିଶ୍ୱାସ ଫେରି ଆସିଲା । ସେ ଉଚ୍ଚ ସ୍ୱରରେ କହିଲେ :

ଯଦି ରାଜା ପ୍ରାଣ ଦେଇ
ପ୍ରତିଶ୍ରୁତି କରନ୍ତି ପାଳନ
ଯଦି ବୀର ଫେରିଯାନ୍ତି
ଶୁଣି କାର ନିଷ୍ଠୁର ବଚନ
ପଥେ ବୁଲୁ ବୁଲୁ ରାଜା
ହୁଅଇ ଭରତ
ସବୁ ଦୋଷ ତା' ଭାର୍ୟର
ପୁଣ୍ୟର ତ ମୃତ୍ୟୁ ନାହିଁ
କଲେ ଅବିରତ ।

ଭରତଙ୍କ ଦୃଢ଼ ବିଶ୍ୱାସ ଯେ- ମଣିଷର ସାମଗ୍ରିକ ଜୀବନ ଏକ ମହାନ୍ ମୂଲ୍ୟବୋଧ ଦ୍ୱାରା ପରିଚାଳିତ । ଭରତଙ୍କ ଏ ବିଶ୍ୱାସକୁ କମ୍ବନ ଅତି ସୁନ୍ଦର ଭାବେ ଉପସ୍ଥାପିତ କରିଛନ୍ତି । କବିଙ୍କର ବାକ୍ୟ ଚୟନ ଓ ସାଂଗୀତିକତା ଅତି ଚମତ୍କାର । ଧ୍ୱନି ଓ ଅର୍ଥର ମିଳନ ତାଙ୍କ କବିତାର ଚରମ ବିଶେଷତ୍ୱ—ଯାହା ଅନ୍ୟ ଭାଷାରେ ଅନୁବାଦ କରିବା ଅସମ୍ଭବ । ନିଜ ପ୍ରତି ତୁଚ୍ଛ-ଭାବକୁ ଭରତ ଯେଉଁପରି ଏଠାରେ ତୃତୀୟ ପୁରୁଷ ମାଧ୍ୟମରେ ବର୍ଣ୍ଣନା କରିଛନ୍ତି ତାହା ତାଙ୍କ ପବିତ୍ର ନାମକୁ ଏକ ପାପୀର ପ୍ରାସଙ୍ଗିକ ଅର୍ଥ ପ୍ରଦାନ କରିଛି । କମ୍ବନ ନାଟକୀୟ ପରିସ୍ଥିତି ସୃଷ୍ଟି କରି ସଂଳାପ ମାଧ୍ୟମରେ ଜୀବନ୍ତ ଚରିତ୍ର ସୃଷ୍ଟି କରିଛନ୍ତି । ଫଳତଃ ପାଠକ ମାନଙ୍କ ମଧ୍ୟରେ ଏହା ଏକ ତୀବ୍ର ନିବିଡ଼ତା ସୃଷ୍ଟି କରି ପାରିଛି ।

ଭରତ ଆଉ କୈକେୟୀଙ୍କ ନିକଟରେ ତିଳେମାତ୍ର ରହିବାକୁ ଚାହିଁନଥିଲେ । ତାଙ୍କ ମତରେ, କୈକେୟୀ ହେଉଛନ୍ତି ଜଣେ ପାପିଷ୍ଠା ଯାହାଙ୍କ ମନ ଅକଥ୍ୟ ନିଷ୍ଠୁରତାରେ ଭର୍ତ୍ତି । କୌଶଲ୍ୟାଙ୍କ ନିକଟକୁ ଯାଇ ସୂର୍ଯ୍ୟବଂଶ 'ଭରତ ନାମକ ଅପନିନ୍ଦା'ରେ କଳଙ୍କିତ ହୋଇଗଲା ବୋଲି କହିଲେ ଭରତ । କାରଣ ତାଙ୍କ ପାଇଁ କେବଳ ପାପିନୀ କୈକେୟୀ ରାମଙ୍କୁ ବିତାଡ଼ିତ କଲେ । ଭରତଙ୍କର ଏପରି ଶୋକପୂର୍ଣ୍ଣ ଉଚ୍ଛ୍ୱାସ ଶୁଣି କୌଶଲ୍ୟା ତତ୍‌କ୍ଷଣାତ୍ ଭରତଙ୍କ ମାନସିକ ସ୍ଥିତି ବିଷୟରେ ଅବଗତ ହୋଇଗଲେ । କାନ୍ଦି କାନ୍ଦି ଭରତଙ୍କୁ ଆଲିଙ୍ଗନ କଲେ କୌଶଲ୍ୟା । ତାଙ୍କର ମନେହେଲା, ସିଂହାସନ ପରିତ୍ୟାଗ କରି ଜଙ୍ଗଲକୁ ଚାଲିଯାଇଥିବା ପୁତ୍ର ଫେରି ତାଙ୍କ ସମ୍ମୁଖରେ ହିଁ ଠିଆ ହୋଇଛନ୍ତି । ଏପରି ପରିସ୍ଥିତିରେ ବଶିଷ୍ଠ ଭରତଙ୍କ ନିକଟରେ

ଉପସ୍ଥିତ ହୋଇଛନ୍ତି ଏବଂ ଭରତଙ୍କୁ କହୁଛନ୍ତି, 'କୌଣସି ରାଜ୍ୟ ଶକ୍ତିଶାଳୀ ରାଜା ବିନା ଉଜ୍ଜ୍ୱଳ ସୂର୍ଯ୍ୟ ବିନା ଦିନ ସଦୃଶ କିମ୍ବା ସ୍ୱଚ୍ଛ ଚନ୍ଦ୍ର ବିନା ଅନ୍ଧକାର ରାତ୍ରି ସଦୃଶ । ତୁମର ପିତା ଏବେ ମୃତ ଏବଂ ଅଗ୍ରଜ ସିଂହାସନ ପରିତ୍ୟାଗ କରି ଏବେ ଅରଣ୍ୟରେ । ତୁମ ମାତାଙ୍କ ଅନୁରୋଧ କ୍ରମେ ତମେ ଏ ରାଜ୍ୟର ରାଜା । ହେ ପୁତ୍ର ! ବର୍ତ୍ତମାନ ତୁମେ ରାଜ୍ୟଭାର ଗ୍ରହଣ କର ।' ଏହା ଶୁଣି ଭରତ ଉତ୍ତରରେ ଗର୍ଜିବାକୁ ଲାଗିଲେ । ଧୀରେ ଧୀରେ ତାଙ୍କର କ୍ରୋଧ ବଢ଼ିବାକୁ ଲାଗିଲା । ବଶିଷ୍ଠଙ୍କ ପରି ଜଣେ ଋଷିଙ୍କ ପକ୍ଷରେ ଏପରି ଉପଦେଶ ଦେବା କ'ଣ ସମୀଚୀନ—ପ୍ରଶ୍ନ କଲେ ଭରତ ।

ରାମଙ୍କୁ ଜଙ୍ଗଲରୁ ଫେରାଇ ଆଣି ରାଜ୍ୟର ନିୟମ ଓ ପୁରାତନ କାଳର ରୀତି ଅନୁଯାୟୀ ଅଭିଷେକ କରିବାକୁ ମତ ଦେଲେ ଭରତ । 'ଯଦି ଆପଣ ଗୋଟିଏ ମାତ୍ର ଶବ୍ଦ ଅଧିକ ଉଚ୍ଚାରଣ କରନ୍ତି', କହିଲେ ଭରତ, 'ମୁଁ ଆତ୍ମହତ୍ୟା କରିବି ।' ଭରତଙ୍କ ମହାନ ନ୍ୟାୟବୋଧ ଏବଂ ରାମଙ୍କ ପ୍ରତି ଅନ୍ୟାୟର ପ୍ରତିକାର ପାଇଁ ନିଷ୍ଠା ଦେଖି ବଶିଷ୍ଠ ତଥା ଅନ୍ୟମାନେ ଅଭିଭୂତ ହୋଇପଡ଼ିଲେ । ଏହାପରେ ଅନୁଜ ଶତ୍ରୁଘ୍ନଙ୍କୁ ଡ଼ାକାଇ ପଠାଇଲେ ଭରତ । ଦେଶ ସାରା ଢେଙ୍ଗୁରା ପିଟି ରାଜ୍ୟବାସୀଙ୍କୁ ସେମାନଙ୍କର ପ୍ରକୃତ ରାଜାଙ୍କୁ ଫେରେଇ ଦେବାରେ ତାଙ୍କ ଅଭିପ୍ରାୟ ବିଷୟ ଜଣାଇ ଦେବାକୁ ପରାମର୍ଶ ଦେଲେ । ଭରତଙ୍କ ଏ ଇସ୍ତାହାର ଶୁଣି ମୃତ ସହର ଜୀବନ୍ତ ହୋଇଉଠିଲା । କମ୍ବନଙ୍କ ନିର୍ଣ୍ଣୟ ଅନୁଯାୟୀ : ପ୍ରେମରେ ଅପଚୟ ଘଟିଲେ ପରିଣତି ହୁଏ ଦୁଃଖ, କିନ୍ତୁ ପ୍ରେମର ଆଧିକ୍ୟ ହିଁ ଦୁଃଖଲାଘବର ଏକମାତ୍ର ପନ୍ଥା ହୁଏ । କବିଙ୍କ ଭାଷାରେ :

ରଥ, ଅଶ୍ୱାରୋହୀ ଦଳ ଓ ହସ୍ତୀମାନଙ୍କ ଦ୍ୱାରା ଅନୁସରିତ ହୋଇ ପଦବ୍ରଜରେ ବାହାରିଲେ ଭରତ । ବାଲ୍ମୀକିଙ୍କ ଭରତ କିନ୍ତୁ ଅତିବ ଉତ୍ସୁକତା ସହ ରଥରେ ବସି ରାମଙ୍କୁ ନେଉଟେଇ ଆଣିବା ପାଇଁ ଦ୍ରୁତଗତିରେ ଅରଣ୍ୟ ଅଭିମୁଖେ ଯାତ୍ରା କରିଛନ୍ତି ।

ଭରତ ଗଙ୍ଗାନଦୀର ତଟବର୍ତ୍ତୀ ଅଞ୍ଚଳରେ ପହଞ୍ଚିଲେ । ନଦୀର ଅନ୍ୟ ପାର୍ଶ୍ୱରେ ରହି ଗୁହ ଭାବିଲେ— ଭରତ ସୈନ୍ୟସାମନ୍ତ ନେଇ ରାମଙ୍କ ବିରୁଦ୍ଧରେ ସଂଗ୍ରାମ ପାଇଁ ଆସୁଛନ୍ତି ।

କମ୍ବନଙ୍କ ଗୁହ ଅନିୟନ୍ତ୍ରିତ ପ୍ରେମ ଓ ଭକ୍ତିର ଏକ ସ୍ୱଚ୍ଛ ପ୍ରତିରୂପ । ଆମ ମନରେ ସେ ଏକ ବାଳକର ଅବିକୃତ ଚେତନା ଓ ଅଦମନୀୟ ପ୍ରତିକ୍ରିୟା ସୃଷ୍ଟି କରିଥାନ୍ତି । ରାମଙ୍କ ପ୍ରତି ଥିଲା ତାଙ୍କର ଅପାର ଭକ୍ତି । ସେଥିପାଇଁ ଏହା ତାଙ୍କୁ କୌଣସି ଉତ୍ତେଜିତ କିମ୍ବା ଅନିୟନ୍ତ୍ରିତ କାର୍ଯ୍ୟ କରିବାକୁ କ୍ଷାନ୍ତ କରିଥିଲା ।

ଖଡ଼୍ଗ ଖୋସା ହୋଇଅଛୁ କମର-ପଟିରେ
ଅଧର ଉଠୁଛୁ ଥର କୋପେ ଆଖି ଜଳେ
ଶବ୍ଦ ବାହାରଇ ସତେ ମାଣବ କାଟିବ
ବାଜଉଠେ ରଣ-ଢୋଲ, ବାଜଇ ବିଗୁଲ
କାନ୍ଧ ଉଠେ ଫୁଲି-ସେ ତ ଅଛନ୍ତି ପ୍ରସ୍ତୁତ
ଜାତି ଜନ ପାଇଁ ଆଜ କରିବେ ସମର ।

ନିଜ ସୈନ୍ୟସାମନ୍ତଙ୍କୁ ଏକତ୍ରିତ କରି ସେମାନଙ୍କୁ ଉଦ୍‌ବୋଧନ ଦେଇ ଆରମ୍ଭ କରିଛନ୍ତି ଗୁହ :

ଏ ଅଟେ ଗମ୍ଭୀର ଆଉ ହିଲ୍ଲୋଳିତ ନଦୀ
ଯାକୁ ପାରିହେବା ତାଙ୍କ ସାହସ ବା କାହିଁ ?
ଧନୁର୍ଦ୍ଧାରି ବୀର ଆମେ ମହା ବଳୀୟାର
ପଳାୟନ କରିବା କି ଦେଖି ହାତୀ-ପଲ ?
ରାମ ମୋତେ ସମ୍ବୋଧିଲେ 'ବନ୍ଧୁ' ମୁଁ ତାଙ୍କର
ନୁହେଁ କି ଏପରି ଶବ୍ଦ, ଶବ୍ଦରେ ଉତ୍ତମ ?

ଭରତଙ୍କ ନିଷ୍ଠୁରଣ ମନୋଭାବ ବିଷୟରେ ଚିନ୍ତା କରି ଗୁହଙ୍କ ମନ ଦୁଃଖରେ ଭରି ଯାଇଥିଲା । ନିଜ ସୈନ୍ୟମାନଙ୍କୁ ସାମରିକ ଶବ୍ଦ ପ୍ରୟୋଗ କରି ସେ ଉଦ୍‌ବୋଧନ ଦେଇଛନ୍ତି—

ସେ ଅଟନ୍ତି ପ୍ରଭୁ ମୋର
ରାଜ୍ୟ ଦେଲେ ଯେ ତାଙ୍କୁ ସମର୍ପି
ସେ ଆଉ ପାରିବେ ନାହିଁ
ଏ ଜଙ୍ଗଲକୁ ଦେଇ
ଜଙ୍ଗଲର ଆମେ ଅଧିପତି ।

ଗୁହ ନଦୀର ଦକ୍ଷିଣ କୂଳରେ ଠିଆ ହୋଇଥିଲା ବେଳେ, ଉତ୍ତର କୂଳରେ ପ୍ରବେଶ କଲେ ମନ୍ତ୍ରୀ ସୁମନ୍ତ । ଗୁହଙ୍କ ବିଷୟ ଉଲ୍ଲେଖ କରି ରାମଙ୍କ ପ୍ରତି ଥିବା ତାଙ୍କର ପ୍ରଗାଢ଼ ଭକ୍ତି ବିଷୟରେ ସେ ଭରତଙ୍କୁ ଅବଗତ କରାଇଲେ । ତତ୍‌କ୍ଷଣାତ୍ ଗୁହଙ୍କୁ ଭେଟିବା ପାଇଁ ଦଳ ନିକଟକୁ ଶତ୍ରୁଘ୍ନଙ୍କ ସହ ଗଲେ ଭରତ । ଶବର-ମୁଖ୍ୟ ଏବେ ଭରତଙ୍କୁ ଅତି ନିକଟରୁ ଦେଖିପାରିଲେ ।

ଜଙ୍ଗଲି-ଘାସରେ ଯେପରି ଶରୀର ତାଙ୍କର
ଧୂଳି ଧୂସରିତ ଦେହ, ମଳିନ ବଦନ ।

ସତେ ଅବା ଜନ୍ମ ଆଜ୍ଞ କରଣ-ବିହୀନ
ପଥରକୁ ତରଳେଇ ଦେବ ତାଙ୍କ ଦୁଃଖ ।
ଏମନ୍ତ ଯେ ଶୋକସିକ୍ତ ଭରତଙ୍କ ମୁହଁ
ଆଚମ୍ବିତ ହେଲେ ଦେଖି ଶବରଙ୍କ ମୁଖ୍ୟ ।
ଶ୍ୱାସରୁଦ୍ଧ ହେଲା ତାଙ୍କ କଣ୍ଠ ଗଲା ଶୁଖି
ହାତରେ ନ ରହି ଧନୁ ତଳେ ଗଲା ଖସି ।

ପ୍ରକୃତସ୍ଥ ହେଲା ପରେ ଗୁହ ଅନୁଭବ କଲେ ଯେ, ଭରତଙ୍କ ଉଦ୍ଦେଶ୍ୟ ଯୁଦ୍ଧ ନୁହେଁ । ଆବେଗକୁ ରୋକିପାରି ନାହାନ୍ତି ଗୁହ ।

ଏ ବିଶ୍ୱାସୀ ରାଜପୁତ୍ର ଦିଶୁଛନ୍ତି ମୋ ପ୍ରଭୁ ପରାୟ
ତାଙ୍କ ପାଖେ ଉପବିଷ୍ଟ ପ୍ରଭୁଙ୍କ ଅନୁଜ
ପିନ୍ଧିଛନ୍ତି ଋଷିଙ୍କ ଭୂଷଣ, ମୁଖ ଦିଶେ ଶୋକରେ ଜର୍ଜର
ସତେ ଅବା ସେ ଶୋକର ନାହିଁ ପଟାନ୍ତର ।
ରାମଙ୍କର ଉଦ୍ଦେଶ୍ୟରେ ଜଣାନ୍ତି ପ୍ରଣତି
ପ୍ରଭୁଙ୍କର ଭ୍ରାତ ହୋଇ ସିଏ କ'ଣ ହେବେ କେବେ ଦୁଷ୍କର୍ମରେ ବ୍ରତୀ ?

ଗୁହ ନୌକାରେ ଅନ୍ୟ ପାର୍ଶ୍ୱକୁ ଯାଇ ଭରତଙ୍କୁ ପ୍ରଣିପାତ କଲେ । ଭରତ ଗୁହଙ୍କ ପାଦ ତଳେ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ କହିଲେ ଯେ, ସେ ଦଶରଥଙ୍କ ଭୁଲର ସଂଶୋଧନ ପାଇଁ ଆସିଛନ୍ତି । ରାମଙ୍କୁ ଫେରେଇ ନେଇ ସିଂହାସନରେ ଅଭିଷିକ୍ତ କରାଇବା ହେଉଛି ତାଙ୍କର ଉଦ୍ଦେଶ୍ୟ । ଏହା ଶୁଣି ଭରତଙ୍କ ପାଦକୁ କୋଳରେ ଭିଡ଼ି ଧରି ଗୁହ କହିଲେ—

ହେ ଦିବ୍ୟ ପୁରୁଷ ତମେ
ଉଦାରତା ତମର ମହାନ୍
ସହସ୍ର ରାମ ବି କେବେଁ
ହେବେ ନାହିଁ ତମ ସମତୁଲ ।

ଭରତ ଗୁହଙ୍କୁ ପ୍ରଶ୍ନ କଲେ, 'ଦୟା କରି କୁହନ୍ତୁ, ଆମର ଅଗ୍ରଜ ଏବେ କେଉଁଠି ବିଶ୍ରାମ କରୁଛନ୍ତି ?' ଗୁହ ଏହାପରେ ଭରତଙ୍କୁ ଆଶ୍ରମ ନିକଟକୁ ନେଇ ଚାଲିଲେ । ରାମ ସେତେବେଳେ ଘାସାଚ୍ଛାଦିତ ପ୍ରସ୍ତର ଖଣ୍ଡପରେ ଶୟନରତ ଥାନ୍ତି । ଅସୀମ ଦୁଃଖରେ ଭାଙ୍ଗିପଡ଼ନ୍ତି ଭରତ ଏବଂ ତାଙ୍କ ଦେହ କମ୍ପିଉଠେ; ସେ ଭୂମି ଉପରେ କରୁଡ଼ ହୋଇ ପଡ଼ନ୍ତି । ଭରତ ଗୁହଙ୍କୁ ପ୍ରଶ୍ନ କଲେ, 'ଯଦି ଏହି ସ୍ଥାନ ଏହି ମହାନ୍ ପୁରୁଷଙ୍କ ଶୟନସ୍ଥଳ ହୁଏ, ତେବେ ତାଙ୍କର ପ୍ରିୟ ଅନୁଜ—ଯାହାଙ୍କ

ହୃଦୟସ୍ଥ ଭାଇଙ୍କ ପାଇଁ ଅସୀମ ପ୍ରେମରେ ପରିପୂର୍ଣ୍ଣ, ଏବଂ ଯେ ତାଙ୍କୁ ଅନୁସରଣ କରି ଏବେ ଅରଣ୍ୟରେ ଅବସ୍ଥାନ କରୁଛନ୍ତି, ସେ କେଉଁଠି ସମସ୍ତ ଅତିବାହିତ କରନ୍ତି ?' ଗୁହ ଉତ୍ତର ଦେଲେ—

ଯେବେ ଭ୍ରାତା ଭାତୃବଧୂ ଶୋଇଥାନ୍ତି
ଗଭୀର ନିଦରେ
ଲକ୍ଷ୍ମଣ ଜାଗ୍ରତ ରହନ୍ତି ଧନୁ ଧରି କରେ
ବହୁଥାଏ ଘନ ଘନ ଉଷ୍ଣ ନିଃଶ୍ୱାସ
ଘନ ଘନ ଝରୁଥାଏ ନୟନରୁ ଲୋତକ
ପଲକ ବିହୀନ ଆଖି ଉଜାଗର ହାର
ଅବିରତ ପ୍ରହରରେ ରଜନୀ ତାର ସୀମା
କରେ ପାର ।

ଗୁହଙ୍କ ଏ ସମ୍ବାଦ 'କିଙ୍ଗ୍ ଲିୟର' ନାଟକରେ କେଣ୍ଟ୍‌ଙ୍କୁ ଦେଇଥିବା ଭଦ୍ରବ୍ୟକ୍ତିଙ୍କ ସମ୍ବାଦ ପରି ମର୍ମସ୍ପର୍ଶୀ । ଉକ୍ତ ନାଟକରେ ଲିୟର୍‌ଙ୍କ ଯନ୍ତ୍ରଣା ଦେଖି କର୍ଡେଲିୟାଙ୍କ ଯେଉଁ ପ୍ରତିକ୍ରିୟା ହୋଇଥିଲା, ତାହା ବାସ୍ତବିକ ଅତୁଳ ଓ କରୁଣ ।

ଭରତଙ୍କ ଅନୁରୋଧ କ୍ରମେ ଗୁହ ତାଙ୍କର ପାଠିଏ ହଜାର ସୈନ୍ୟସାମନ୍ତ ଏବଂ ଅଯୋଧ୍ୟାର ଶୋକାକୁଳ ଅଧିବାସୀଙ୍କୁ ଗଙ୍ଗାନଦୀ ପାର କରାଇ ଦେଲେ । ଏହାପରେ ଭରତ, ନିଜ ଭ୍ରାତା, ତିନି ରାଣୀ ଓ ମନ୍ତ୍ରୀ ସୁମନ୍ତ୍ରଙ୍କ ସହ ନୌକାରେ ଉପବିଷ୍ଟ ହେଲେ । ଗୁହ ନୌକା ବାହିନେଲେ । ନୌକାଟି ଯେପରି 'ଅନୁପମ ପାଦ-ରୂପକ ଜାତରେ ପହଁରି ପହଁରି ଧୀରେ ଧୀରେ ଅଗ୍ରସର ହେଉଥିଲା' ।

ରାଣୀଙ୍କ ପରିଚୟ

ନଦୀ ପାର ହେଲାବେଳେ ରାଣୀ କୌଶଲ୍ୟାଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ସେ କିଏ ବୋଲି ଭରତଙ୍କୁ ପ୍ରଶ୍ନ କଲେ ଗୁହ । ଭରତ କହିଲେ, 'ଏ ହେଉଛନ୍ତି ସେ ଉଦାର ମାତା, ଯାହାଙ୍କ ପୁତ୍ର ସାରା ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା । ଏ ହେଉଛନ୍ତି ସେଇ ମାତା, ଯେ ମୋ ଜନ୍ମ ହେତୁ ରାଜାଧିକାରର ସମସ୍ତ ସୌଭାଗ୍ୟ ପରିତ୍ୟାଗ କରିଛନ୍ତି ।' ଗୁହ କୌଶଲ୍ୟାଙ୍କ ଚରଣ ସ୍ପର୍ଶପୂର୍ବକ ପ୍ରଣିପାତ କଲେ ଏବଂ କାନ୍ଦି କାନ୍ଦି ହୋଇ କାନ୍ଦି ଉଠିଲେ । ଗୁହଙ୍କୁ ଲକ୍ଷ୍ୟ କରି ସେ କିଏ ବୋଲି ପ୍ରଶ୍ନ କଲେ କୌଶଲ୍ୟା । ଉତ୍ତରରେ ଭରତ କହିଲେ, ସେ ହେଉଛନ୍ତି ଗୁହ—ରାମଙ୍କ ଅନ୍ତରଙ୍ଗ ବନ୍ଧୁ ଏବଂ ଲକ୍ଷ୍ମଣ, ଶତ୍ରୁଘ୍ନ ଓ ତାଙ୍କ ନିଜର ବଡ଼ ଭାଇ । ଗୁହଙ୍କ ବେଦନରେ ଭରତ ଓ ଶତ୍ରୁଘ୍ନଙ୍କ ଆଖି ମଧ୍ୟ ଲୁହରେ ଓଦା ହୋଇଗଲା । କୌଶଲ୍ୟା ଏକ

ପଦ୍ୟ ମାଧ୍ୟମରେ ସେମାନଙ୍କୁ ସାନ୍ତ୍ୱନା ଦେଇଛନ୍ତି । ତାଙ୍କର ପ୍ରତ୍ୟେକ ଶବ୍ଦରେ ଭରି ରହିଛି ନିର୍ମଳ ଆଶୀର୍ବାଦର ଧାରା । ମୂଳ ତାମିଲ ରଚନା ପାଠ କଲେ ମନେହେବ ଯେପରି ହଜାର ହଜାର ବାଦ୍ୟପକ୍ଷର ଦୋଳନରେ ଗଗନପବନ ପ୍ରକମ୍ପିତ ହୋଇ ଉଠିଛି ଏବଂ ମଣିଷର ଆହତ ହୃଦୟ ଦେଇ ବହିଯାଉଛି ଏକ ସୁଗନ୍ଧିତ ପବନ । ମୂଳ ତାମିଲ ରଚନାଟି ଏହିପରି :

ନୈବର ଆଲ୍ଲର, ମୈନ୍ତର୍ !
ଇନି ଭୁସ୍ତଗଲ୍ ; ନଟରଣ୍ଣ୍
କାଟ୍ଟୁ ନୋକ୍ କା
ମୈଭଗର ପେସ୍ତରଟ୍ଟୁଭମ୍
ନଲମାସ୍ତି ଛମ୍ ଅଣ୍ଡ୍ରେ
ବଲଙ୍ଗଲ ଟୋଲ
କୈୱାରକ କଲ୍ଲରନସ୍ତ
କାଲଇ ଇବନ ଟନ୍ଲୋଟ୍ଟୁମ୍
କଲଟ୍ଟୁ କ୍ଷାବର୍
ଔନ୍ନରମ ଓଲ୍ଲୁ କାରଇ
ଅହଲ୍ଟେଇ ନେହୁଙ୍ଗଲ୍ମ୍
ଅଲଚ୍ଛିର୍ ଏନ୍ଦ୍ରାଲ ।

କମ୍ବନଙ୍କ ଭିନ୍ନ ଭିନ୍ନ ସାଙ୍ଗୀତିକ ବ୍ୟବହାର ପ୍ରଣାଳୀ ଅତିବ ଚମତ୍କାର । ବାସ୍ତବିକ କମ୍ବନ ଯେ କୌଣସି ଇଂରେଜୀ କବିଙ୍କ ଅପେକ୍ଷା ବେଶ୍ ଅଧିକ ସାଙ୍ଗୀତିକ ଏକକ ବ୍ୟବହାର କରିଛନ୍ତି । ଉକ୍ତ ପଦ୍ୟାଂଶରେ ପ୍ରତ୍ୟେକ ପଦ ସ୍ୱର ଧାଡ଼ି ବିଶିଷ୍ଟ ଏବଂ ପ୍ରତ୍ୟେକ ଧାଡ଼ି ୧୯ କମ୍ବା ୨୦ ଶବ୍ଦ-ଧ୍ୱନିର ସମାହାର । ଏତେଗୁଡ଼ିଏ ଶବ୍ଦ ବା ଧ୍ୱନିକୁ ନିୟନ୍ତ୍ରିତ କରିପାରିବା ତାଙ୍କ ଅଦ୍ୱିତୀୟ ପରାକାଷ୍ଠାର ଲକ୍ଷଣ, ଏବଂ ସେଗୁଡ଼ିକ ସଙ୍ଗୀତ-ଶୃଙ୍ଖଳାରେ ସଜ୍ଜିତ କରି ପ୍ରତ୍ୟେକ ପଦରେ ଏକ ଏକ ନିର୍ଦ୍ଦିଷ୍ଟ ଆବେଗ ଉଦ୍ରେକ କରିପାରିବା ହେଉଛି ତାଙ୍କର ମହାନ କାବ୍ୟିକ କୃତି ।

ବେଥୋଭେନ୍ ଥରେ କହିଥିଲେ : ସେ ସଙ୍ଗୀତରେ D-major (ପାଶ୍ଚାତ୍ୟ ସଙ୍ଗୀତରେ ଏହା ହେଉଛି C-majorର ଦ୍ୱିତୀୟ ପାଦ) ହାସଲ କରିପାରିଥିଲେ । ସେହିପରି ପ୍ରତ୍ୟେକ ପଦାର୍ଥ, ପ୍ରତ୍ୟେକ ବ୍ୟକ୍ତି କମ୍ବନଙ୍କୁ ଏକ ଏକ ନିର୍ଦ୍ଦିଷ୍ଟ ସ୍ୱର (Key)ରେ ଆକର୍ଷିତ କରିଥାନ୍ତି । କମ୍ବନ ଏ ସ୍ୱରକୁ ଏତେ ସୁନ୍ଦର ଲାଳିତ୍ୟର ଶବ୍ଦ ଓ ଛନ୍ଦରେ ପ୍ରକାଶ କରିଛନ୍ତି, ଯାହା ସମ୍ବେଦନଶୀଳ ଓ ସଚେତନ ପାଠକ ମନରେ ଗଭୀର ରେଖାପାତ କରିଥାଏ । କମ୍ବନଙ୍କ ଶବ୍ଦ ଯେଉଁ ଇନ୍ଦ୍ରଜାଲ

ସୃଷ୍ଟି କରିଥାଏ କମ୍ବା ତାଙ୍କ ସ୍ୱରରେ ଯେଉଁ ଗାମ୍ଭୀର୍ଯ୍ୟ ଭରି ରହିଛି, ତାକୁ କୌଣସିମତେ ଅନୁବାଦ ମାଧ୍ୟମରେ ପ୍ରକାଶ କରିବା ସମ୍ଭବ ନୁହେଁ । କିନ୍ତୁ ବର୍ଣ୍ଣନାର ସହିତ ତୁଳ୍ପି ରୁ ନିମ୍ନରେ କୌଶଲ୍ୟାଙ୍କ ବକ୍ତବ୍ୟକୁ ଉପସ୍ଥାପିତ କରାଯାଉଛି—

ଶୋକ କର ନାହିଁ ପୁତ୍ର, କର ନାହିଁ ଶୋକ
ସତ୍ୟର ସଂଗ୍ରାମୀ ପିଏ, ତ୍ୟାଗେ ରାଜଭୋଗ ।
ଚାଲିଥାଏ ବନେ ସିଏ ପାଳିବାକୁ ସତ୍ୟ
ଶକ୍ତିମାନ ଯୋଦ୍ଧା ଏ ତ ବନ୍ଧୁ ତାଙ୍କୁ କର ।
ଦଣ୍ଡାସ୍ତ୍ରମାନ ଯେ ଏଠି ଯୁଦ୍ଧ-ଦ୍ୱାରା ପ୍ରାପ୍ତ
ଶୁଣ୍ଡି ଦଣେ ସତେ ଅବା ବିରାଟ ପର୍ବତ ।
ବନ୍ଧୁ ତାରେ ବାନ୍ଧି ହୋଇ ପାଞ୍ଚ ବୃଥ ଏକ
ଦୀର୍ଘଦିନ ଧରି ତମେ ଏ ମହୀକୁ ପାଳ ।

ପରିପକ୍ୱ ଦୁଃଖରେ କୌଶଲ୍ୟାଙ୍କ ମାତୃହୃଦୟସ୍ଥ ନୀଚ ଶବର-ରାଜାଙ୍କୁ ଆଲିଙ୍ଗନ କରିଥିଲା । କୌଶଲ୍ୟାଙ୍କର ମନେହେଲା— ଗୁହ ଯେପରି ତାଙ୍କର ଅଭିଜାତ ପୁତ୍ରମାନଙ୍କ ମଧ୍ୟରେ ଅନ୍ୟତମ । ଉକ୍ତ ପଦ୍ୟାଂଶରେ ଯେଉଁ ଅନୁଚିନ୍ତା ରହିଛି, ସେଥିରେ ଏକ ପୌରାଣିକ ସମ୍ପନ୍ନ ଲକ୍ଷଣୀୟ । ଏହା ପାଠକମାନଙ୍କୁ ମାନବିକ ନିକୃଷ୍ଟତାର ବହୁ ଊର୍ଦ୍ଧ୍ୱକୁ ନେଇଯାଇଥାଏ ।

ପୁଣ୍ୟର ଏକ ମୂର୍ତ୍ତିମନ୍ତ ପ୍ରତିଛବି ପରି ଦିଶୁଥିଲେ ସୁମିତ୍ରା । ତାଙ୍କୁ ଗୁହ ପ୍ରଶ୍ନ କଲେ, 'ପ୍ରେମରେ ଉତ୍ଫୁଲ୍ଲ ହୋଇ ଉଠୁଥିବା ଏ ନୋଗ୍ରା ଜଣକ କିଏ, ଦୟାକରି କୁହନ୍ତୁ ।' ଅମଳିନ ସତ୍ୟର ରକ୍ଷା ପାଇଁ ପ୍ରାଣବଳି ଦେଇଥିବା ସେ ମହାନ୍ ରାଜାଙ୍କ ଏ ହେଉଛନ୍ତି ସର୍ବକନିଷ୍ଠ ରାଣୀ । ଏ ହେଉଛନ୍ତି ପୂଜ୍ୟ ରାମଙ୍କ ଅବିଚ୍ଛେଦୀ ଭ୍ରାତାଙ୍କ ଜନନୀ, ଯେଉଁ ଭ୍ରାତା ସଂସାରକୁ ଦେଖେଇ ଦେଲେ ଯେ, ରାମଙ୍କର ମଧ୍ୟ ଜଣେ ଭାଇ ଅଛି ।

ଏପରି ପରିଚୟ ଦେଲାପରେ କମ୍ବନ ଅପ୍ରସ୍ତୁତ ବୋଧ କରିଛନ୍ତି । କାରଣ : ତାଙ୍କର ଆଶଙ୍କା ଯେ, ଏହାପରେ ଗୁହଙ୍କ ଦୃଷ୍ଟି କୈକେୟୀଙ୍କ ଆଡ଼କୁ ଲମ୍ବି ଯାଇପାରେ । ଖ୍ୟାତନାମା ଅଳଙ୍କାର ଶାସ୍ତ୍ର-ବିଶାରଦ ଟି. କେ. ଚିଦାମ୍ବରନାଥଙ୍କ ମତରେ, କମ୍ବନ ପରବର୍ତ୍ତୀ ପଦ୍ୟରେ ଅପ୍ରସ୍ତୁତଭାବକୁ ଅତି କୋମଳ ଭାବେ ପରିସ୍ଫୁଟ କରିଛନ୍ତି :

ସ୍ୱାମୀ ଯାଇଛନ୍ତି ହଜି ଶ୍ମଶାନ ଭୂଇଁରେ
ପୁତ୍ର ଯାଇଛନ୍ତି ହଜି ଶୋକ ପାରାବାରେ

ଦୟାର ସାଗର ସେ ତ ବୀର ରାମଚନ୍ଦ୍ର
ଜଙ୍ଗଲରେ କରୁଛନ୍ତି ଏବେ ଅବସ୍ଥାନ
ସେ ଯେ- ନାରୀ ଯା'ର ମନ ନିଷ୍ଠୁର ନିର୍ମମ
ନିର୍ମମ ମନରେ ଯିଏ କରିଅଛି ସମସ୍ତ ସଂସାର
ସେ ସବୁକୁ ବିଷ୍ଟୁ ଦନେ କରିଥିଲେ ନିଜ ମହିମାରେ
ଗୁହ ପୁଚ୍ଛିଲେ, 'ଦୟାକରି କୁହ ମୋତେ
ଏ ନାରୀଟି କିଏ ?

ପୁଞ୍ଜିଭୂତ କ୍ରୋଧ ସମ୍ବରଣ କରିପାରିନଥିଲେ କମ୍ବନଙ୍କ ଭରତ । ତାଙ୍କର ଉତ୍ତର ଥିଲା :

ପୃଥିବୀର ସବୁ ପାପ—ଏହାଙ୍କର ସୃଷ୍ଟି
ପ୍ରତିଶୋଧ ଅନଳରେ ଜଳେ ତାଙ୍କ ହିଆ
ଏ ଯେ ନାରୀ ମୋ'ର ସବୁ କ୍ଲେଶର କାରଣ
ଯଦିଓ ମୁଁ ନେଇଅଛି ଯା' ଜରାୟୁ ଜନ୍ମ
ଏ ଯେ ନାରୀ—ଯା' ମନରେ ନାହିଁ ତିଳେ ଦୁଃଖ
ଯେତେବେଳେ ସଂସାରରେ ସବୁ ଦଶେ ମୃତ ।
କହିକି ପାରିବ ତୁମେ କିଏ ଏହି ନାରୀ
ସେ ନାରୀଟି କେହି ନୁହେଁ, ସେ ମୋର ଜନନୀ ।

ଭରତଙ୍କ ଏହିସବୁ ତିକ୍ତ ଶବ୍ଦ ସମବେତ ସମସ୍ତଙ୍କ ପାଇଁ ଅତୀବ ଅପ୍ରୀତିକର ପରିବେଶ ସୃଷ୍ଟି କରିଥିଲା । ତେବେ କବି ସେମାନଙ୍କୁ ତଥା ପାଠକମାନଙ୍କୁ ଏହି ଅପ୍ରୀତିକର ପରିବେଶରୁ ମୁକ୍ତ କରିବାକୁ ତତ୍‌କ୍ଷଣାତ୍ ନୌକା-ଦୃଶ୍ୟର ପରିକଳ୍ପନା କରିଛନ୍ତି । ଏହା ବ୍ୟତୀତ ନିଜ କାବ୍ୟ ଶୈଳୀର ପରିବର୍ତ୍ତନ ଉଦ୍ଦେଶ୍ୟରେ ଦୀର୍ଘ ଶ୍ୱାସାନ୍ତ ପଦ୍ୟ ପରିବର୍ତ୍ତେ କ୍ଷୁଦ୍ର କୋମଳ ପଦ୍ୟ ବ୍ୟବହାର କରିଛନ୍ତି ।

ତଥାପି ଏ ନିଷ୍ଠୁର ନାରୀରେ
ଗୁହ ଜନନୀ ଭାବିଲେ
ନିଜର ପବିତ୍ର ହାତରେ
ତାଙ୍କୁ ସେ ପ୍ରଣିପାତ କଲେ
ପକ୍ଷହୀନ ମରାଳ ପରି
ନୌକାଟି ଗଲା ଆରପାରି

ପରିବେଶର ପୁନରୁଦ୍ଧାର ପାଇଁ କବି ନିଜର ବିରଳ ନାଟକୀୟ ନୈପୁଣ୍ୟ ପ୍ରୟୋଗ କରିଛନ୍ତି । କୌଣସି ପ୍ରତିଭାଶାଳୀ କବି ଏ ପରିସ୍ଥିତିରେ ଏକ କାରୁଣ୍ୟର ଚିତ୍ର ଉପସ୍ଥାପିତ କରି ଏକ ନମ୍ର କାବ୍ୟିକ ପରିବେଶ ସୃଷ୍ଟି କରିଥାନ୍ତେ । ଅନୁଷ୍ଠାନିତ ଆହ୍ଲାଦ ଏବଂ ପକ୍ଷଶାଳୀ ଧ୍ୱଂସ ମଧ୍ୟରେ ଥିବା ସାମଞ୍ଜସ୍ୟ ଏତେ ମନୋରମ ଯେ, ପାଠକଙ୍କ ଦୃଷ୍ଟି ଦୁଃଖଦ ଓ ଅଶ୍ରୁଳ ପରିବେଶରୁ ଉପମାର ସୌନ୍ଦର୍ଯ୍ୟ ପର୍ଯ୍ୟନ୍ତ ତଥା ସେମାନଙ୍କ ସ୍ଥଳଭାଗରେ ଅବତରଣ ଦୃଶ୍ୟ ପର୍ଯ୍ୟନ୍ତ ପ୍ରସାରିତ ହୋଇଅଛି ।

## ପୃଥିବୀରେ ସ୍ୱର୍ଗ

ନୌକାରୁ ଓହ୍ଲାଇ ଭରତ ତଥା ଅନ୍ୟମାନେ ଋଷି ଭରଦ୍ୱାଜଙ୍କ ଆଶ୍ରମ ଆଡ଼କୁ ଗଲେ । ଭରଦ୍ୱାଜ ବାହୁ ପ୍ରସାରିତ କରି ସେମାନଙ୍କୁ ସ୍ୱାଗତ କଲେ ଏବଂ ଆଶୀର୍ବାଦ ଦେଲେ । ଭୋଜିର ଆୟୋଜନ କରି ସେମାନଙ୍କୁ ଆପ୍ୟାୟିତ କଲେ ଏହାପରେ ନିଜର ତପର ଐଶ୍ୱର୍ଯ୍ୟ ଦ୍ୱାରା ସନ୍ନ୍ୟାସୀ ଏପରି ଏକ ଇଚ୍ଛା ବ୍ୟକ୍ତ କଲେ, ଯା ଫଳରେ ସ୍ୱର୍ଗ ତଳକୁ ଖସି ଖସି ଆସିଲା ଏବଂ ପୃଥିବୀ ପୃଷ୍ଠରେ ଅତି ସୁନ୍ଦରଭାବେ ଓହ୍ଲାଇ ପଡ଼ିଲା ।

ଭରତ ଓ ତାଙ୍କର ଅନୁଗାମୀଙ୍କୁ ମନ୍ତ୍ରମୁଗ୍ଧ ଧରାପୃଷ୍ଠର ସ୍ୱର୍ଗରେ ଛାଡ଼ି, କବି ଆମମାନଙ୍କୁ ଚିତ୍ରକୂଟ ପର୍ବତ ଆଡ଼କୁ ନେଇ ଯାଇଛନ୍ତି । ଚିତ୍ରକୂଟରେ ରାମ, ସୀତା ଓ ଲକ୍ଷ୍ମଣ ଅବସର ବିନୋଦନରେ ଲିପ୍ତ ଥାନ୍ତି । ଦିନେ ଲକ୍ଷ୍ମଣ କୁଟୀର ପ୍ରାଙ୍ଗଣରେ ବସିଛନ୍ତି, ତାଙ୍କର ମନେହେଲା ଅସ୍ପଷ୍ଟ ଦୂରତ୍ୱରେ କିଛି ଗୋଟେ ଅସ୍ପଷ୍ଟଭାବେ ଆଗଉଚି । ପୃଥିବୀପୃଷ୍ଠରୁ ବାହାରି ଆସିଥିବା ଅଗ୍ନିଶିଖାମୟ କ୍ରମଶଃ ଜିହ୍ୱା ଭଳି ଦିଶୁଛି ଖୁବ୍ ନିକଟରେ ଦଣ୍ଡାୟମାନ ଏକ ଗିରିଶୃଙ୍ଗ । ପର୍ବତଶୃଙ୍ଗ ଆରୋହଣ କରି ତାର ଚୂଡ଼ାଦେଶରୁ ଉତ୍ତର ଦିଗକୁ ଚାହିଁଲେ ଲକ୍ଷ୍ମଣ । ଧନୁ ଓ ଶରର ଏକ ସମୁଦ୍ର ମାଡ଼ି ଆସୁଥିବାର ଲକ୍ଷ୍ୟ କଲେ ସେ । ନିଃସନ୍ଦେହରେ ଏହା ଥିଲା ଭରତଙ୍କ ସୈନ୍ୟସାମନ୍ତଙ୍କ ଯାତ୍ରା । ଗୁହଙ୍କ ପରି ଲକ୍ଷ୍ମଣ ମଧ୍ୟ ଥିଲେ ଉତ୍ତେଜନା-ସଙ୍କୁଳ ଓ ବଦରାଗୀ । ସେ ଭରତଙ୍କ ଅଭିପ୍ରାୟକୁ ଠିକ୍ ଭାବେ କଳିପାରିଲେନି । କାଳବିଳମ୍ବ ନ କରି ସେ ଶତ୍ରୁଙ୍କୁ ପ୍ରତିରୋଧ କରିବା ପାଇଁ ଦ୍ରୁତ ଆଗେଇଗଲେ । ପାହାଡ଼ ଶୀର୍ଷରୁ ଭୂମି ଉପରେ ଲମ୍ଫଦେଲେ ଲକ୍ଷ୍ମଣ ଏବଂ ପଥରଖଣ୍ଡ ଉପରେ ଗୋଡ଼କୁ କଚାଡ଼ି ଧୂଳିର ଏକ ମେଘ ସୃଷ୍ଟି କଲେ । ରାମଙ୍କ ନିକଟକୁ ଯାଇ ଉଚ୍ଚ ସ୍ୱରରେ କହିଲେ, 'ସମ୍ମାନବୋଧହୀନ ଭରତ ଅଯୋଧ୍ୟାର ବିରାଟ ସେନାବାହିନୀ ଧରି ଆପଣଙ୍କ ବିରୁଦ୍ଧରେ ଯୁଦ୍ଧ ପାଇଁ ଆସୁଛନ୍ତି ।' ନିଜର କବଚ ପରିଧାନ କରି ଧନୁ ଉଠାଇଲେ ଲକ୍ଷ୍ମଣ । ଅତି ଭକ୍ତିର ସହ ରାମଙ୍କ ପାଦ ସ୍ପର୍ଶ କରି ମୁହୂର୍ତ୍ତିକେ ଭରତଙ୍କ ସୈନ୍ୟସାମନ୍ତଙ୍କୁ ନିଶ୍ଚିହ୍ନ କରିଦେବାକୁ କହିଲେ । ନିଜର ମାନସ-ଚକ୍ଷୁରେ

ଲକ୍ଷ୍ମଣ ଏକ ଭୟଙ୍କର ରକ୍ତରଞ୍ଜିତ ଦୃଶ୍ୟ ଦେଖିଛନ୍ତି ଯାହାକୁ ସେ ଅତି ରମଣୀୟ ଭାବେ ତଥା ଯୁଦ୍ଧଖୋର ଆନନ୍ଦ ମାଧ୍ୟମରେ ବର୍ଣ୍ଣନା କରିଛନ୍ତି ।

ତମେ ତ ଦେଖିବ ରକ୍ତର ନଈ
ଘ୍ ଘ୍ ଶବ୍ଦେ
କପରି ମିଶଇ ସମୁଦ୍ରରେ ଯାଇ ବନ୍ଧୁ;
ସବୁ ପାପକୁ ଛିନ୍ନ ଭିନ୍ନ କରି
ଦ୍ୱୀପୋପମ-ହସ୍ତୀଙ୍କୁ ଭୂମିରେ ପକାଇ
ସବୁ ରଥକୁ ଧୂଳିରେ ମିଶେଇ ଦେଇ ।

କମ୍ବନ, ଯିଏ ଅତି କ୍ଷୁଦ୍ର ଘଟଣାକୁ ଅତି ନାଟକୀୟ ଛଟାରେ ବର୍ଣ୍ଣନା କରିପାରନ୍ତି, ଏହି ରକ୍ତ ନଦୀକୁ ଏମିତି ନଷ୍ଟ ହେବାକୁ ଦେଇନାହାନ୍ତି । ଲକ୍ଷ୍ମଣଙ୍କ କଣ୍ଠରେ ସେ କହିଛନ୍ତି :

ଭାସମାନ ସେଇ ରକ୍ତର ସ୍ରୋତେ
ଭାସିଯିବେ କେତେ ଲାଲ ରାକ୍ଷସଗଣ
ବାମନ ଯାହାଙ୍କ ଆଖିରେ ଗର୍ତ୍ତିମାନ;
ପୁଣି କେତେ କାର ମସ୍ତକଖାନ ଦେଖି
ଆନନ୍ଦେ କହିବେ ଦେବତାଙ୍କ ପରି
"ଏ ରାଜ୍ୟ ତ ହୋଇଲା ତୁମର" ।

'ରାଜାଙ୍କ ଆଦେଶରେ ଭରତ ଏବେ ରାଜ୍ୟ ଶାସନ କରୁଛନ୍ତି, ଏବଂ ବର୍ତ୍ତମାନ ମୋ ନିର୍ଦ୍ଦେଶରେ ସେ ନର୍କରେ ରାଜତ୍ୱ କରିବେ ।' କହିଲେ ଲକ୍ଷ୍ମଣ ।

ଲକ୍ଷ୍ମଣଙ୍କ ଏତାଦୃଶ ଭୟାନକ ଧମକ ଶୁଣି ଅତି ବିଷାଦଗ୍ରସ୍ତ ହୋଇପଡ଼ିଲେ ରାମ । ସେ କହିଲେ—

ସଂସାରରେ ଅଛି ଯେତେ ଯେତେ ଧର୍ମଗ୍ରନ୍ଥ
ସମସ୍ତେ କରନ୍ତି ପୁଣ୍ୟର ବହୁ ଗାନ
ଭରତ କିନ୍ତୁ ପାଳନ କରନ୍ତି ପୁଣ୍ୟ
ଯାହା ସେ କରନ୍ତି ହୁଏବ ତ ସିଏ ପୁଣ୍ୟ
ଯାହା ନ କରନ୍ତି, ପୁଣ୍ୟ କି ତାର ନାମ ?
ମୋ ପାଇଁ ପ୍ରେମ କରିଛ ତମକୁ ଅନ୍ଧ
ସେଥିପାଇଁ ତମେ ବୁଝିପାରୁ ନାହଁ ଏହାର ଗୂଢ଼ ତତ୍ତ୍ୱ
ସେ ଯେ ସ୍ୱୟଂ ବିବେକର ଅଧୀଶ୍ୱର

ଯାର ଉତ୍କର୍ଷର ଉଚ୍ଚ ସେ ଅକ୍ଷଦଣ୍ଡ
ତାରେ ଅମଙ୍ଗଳ ପାଞ୍ଚୁଛ କିଆଁ ହେ ଭ୍ରାତ ?
ସେ ତ ଆସିଛନ୍ତି ଛାଡ଼ିଦେବାଲାଗି ଭକ୍ତି
ଏଇକ୍ଷଣି ତମେ ପାରିବ ତା ଜାଣି ।

ରାମ ଏହା କହୁ କହୁ ଶତ୍ରୁଘ୍ନଙ୍କୁ ନେଇ ଭରତ ଅତି ଉତ୍କଣ୍ଠା ସହ ରାମଙ୍କ ନିକଟରେ ତାଙ୍କ ଦର୍ଶନ ପାଇଁ ପହଞ୍ଚିଲେ । ତାଙ୍କ ହାତ ଦୁଇ ଭକ୍ତିରେ ଯୋଡ଼ି ହୋଇ ଯାଇଚି । ତାଙ୍କ ଦେହ ହୋଇ ଯାଇଛି ସ୍ଥିର ଏବଂ ଲୋତକରେ ଭରି ଯାଇଚି ଚକ୍ଷୁ ଯୁଗଳ । ମନେ ହୋଇଛି ସତେ ଯେପରି ଭରତ ଏକ ଚନ୍ଦ୍ରପଟ ଏବଂ ତାହା ଘୋଷଣା କରୁଛି ଯନ୍ତ୍ରଣାର ଏ ଏକ ଚନ୍ଦ୍ର ।

ଭରତଙ୍କ ଆପାଦମସ୍ତକ ଆଖି ବୁଲାଇ ନେଲେ ରାମ । ଲକ୍ଷ୍ମଣଙ୍କୁ ଲକ୍ଷ୍ୟକରି କହିଲେ—

ଦେଖ ! ଧନୁର୍ଦ୍ଧାରୀ ଭ୍ରାତା
ଖୋଲି ତୁମ ନୟନ ଯୁଗଳ
ଯୁଦ୍ଧଖୋର ଭରତଙ୍କ ମୁହଁ
ଦେଖ ତାଙ୍କ ଆରକ୍ଷୀ ସକଳ ।

ଚକିତ ହୋଇ ଦଣ୍ଡାୟମାନ ରହିଥିଲେ ଲକ୍ଷ୍ମଣ । ତାଙ୍କର ଭର୍ତ୍ସନାପୂର୍ଣ୍ଣ ଶବ୍ଦ ନୀରବ ହୋଇ ଯାଇଥିଲା । ତାଙ୍କର କ୍ରୋଧ ଓ ଧନୁ ସହ ଲୁହ କେଉଁଠିକା ଖସି ଭୂମିରେ ପଡ଼ିଥିଲା । ଭରତଙ୍କ ଶୀର୍ଣ୍ଣ ଶରୀର ଦୁଃଖରେ ଅବସନ୍ନ ଦିଶୁଥିଲା । ରାମଙ୍କ ନିକଟକୁ ଯାଇ ସେ ଅଭିଯୋଗପୂର୍ଣ୍ଣ ଶବ୍ଦ ପ୍ରୟୋଗ କରି କହିଲେ—

ଆପଣ କରିଲେ ନାହିଁ ପୁଣ୍ୟର ବିଚାର
ଅନୁକମ୍ପା ଫିଙ୍ଗି ଦେଲେ କାହିଁ କେତେଦୂର
ଧର୍ମକୁ ଲଂଘନ କଲେ କିମ୍ପା ହେ ଅଗ୍ରଜ !

ଏହା କହି ରାମଙ୍କ ପାଦତଳେ ପଡ଼ିଲେ ଭରତ । ରାମଙ୍କୁ ଚାହିଁଲା ବେଳେ ମନେ ହେଉଥିଲା ସତେ ଯେପରି ତାଙ୍କର ମୃତ ପିତା ଜୀବନ୍ୟାସ ପାଇଛନ୍ତି । ନିଜର ଅଶ୍ରୁରେ ଭରତଙ୍କ ଜଟାକୁ ଆର୍ଦ୍ରକଲେ ରାମ ଏବଂ ତାଙ୍କୁ ଦୁଇ ବାହୁରେ ତୋଳିଧରି ନିଜ ଛାତିରେ ଭିଡ଼ି ଧରିଲେ । ଏପରି ଦୃଶ୍ୟକୁ ଅତି ଭାବପ୍ରବଣତା ସହ ବର୍ଣ୍ଣନା କରିଛନ୍ତି କମ୍ବନ

ଏହିପରି ପୁଣ୍ୟ ଯା'ର ଭିତ୍ତିଭୂମି ପ୍ରେମ
ଆଲିଙ୍ଗନ କଲେ
ଯାହା ଉଚିତ, ଯଥାର୍ଥ !

ଏହାପରେ ରାମ ତାଙ୍କୁ ପ୍ରଶ୍ନ କଲେ, 'ସର୍ବଶକ୍ତିମାନ ମହାରାଜଙ୍କ ଖବର କଣ ?' ଭରତ ଉତ୍ତର ଦେଲେ, ସେ ଆଉ ନାହାନ୍ତି ଅଗ୍ରଜ । ଆପଣଙ୍କ ବିଚ୍ଛେଦ-ଜନିତ ବେଗରେ ଆକ୍ରାନ୍ତ ହୋଇ ସେ ପ୍ରାଣତ୍ୟାଗ କରିଛନ୍ତି । ମୋର ମାତା ଦୁଷ୍ଟମତି କୈକେୟୀଙ୍କ ବରଭିକ୍ଷା ଯମ ହୋଇ ତାଙ୍କ ଜୀବନରେ ପୂର୍ଣ୍ଣଚ୍ଛେଦ ଆଣି ଦେଇଛି ।' ଏହା ଶ୍ରବଣ କରି, ରାମଙ୍କ ଆଖି ତାଙ୍କ ମନ ପରି ଘୂରୁଛି ଏବଂ ଉଭୟେ ନଇଁ ପରି ଘୂରୁଛନ୍ତି । ଏହାପରେ 'ଉଚ୍ଚତରଙ୍କ ମଧ୍ୟରେ ଉଚ୍ଚତମ' ରାମ ସଂଜ୍ଞା ହରେଇ ପଡ଼ିଛନ୍ତି ।

ଋଷି ବଶିଷ୍ଠ ତାଙ୍କୁ ଆଶ୍ୱାସନା ପୂର୍ଣ୍ଣ ବାଣୀ ଶୁଣାଇ କହୁଛନ୍ତି, 'ଜନ୍ମ ପରି ମୃତ୍ୟୁ ପ୍ରକୃତିର ଏକ ନିୟମ । ଏହି ସତ୍ୟ ଯଦି ଭୁଲିଯାଅ, ତା' ହେଲେ ତମେ କଣ ସବୁ ଧର୍ମଶାସ୍ତ୍ର ଭୁଲି ଯାଇଛ ?' ଏପରି ଆଶ୍ୱାସନା ଶୁଣି, ରାମ ପାହାଡ଼ୀ ଝରଣା ନିକଟକୁ ଯାଇଛନ୍ତି ଏବଂ ସେଠାରେ ସ୍ନାନ କରି, ଜଳରେ ତିନିବାର ତର୍ପଣ କରିଛନ୍ତି ।

ଏହାପରେ ଯେଉଁ ଦୃଶ୍ୟ ବର୍ଣ୍ଣିତ ହୋଇଛି, ସ୍ଥାନାଭାବ ହିଁ ଏଇ ଲେଖକଙ୍କ ସମ୍ମୁଖରେ ପ୍ରତିବନ୍ଧକ ହୋଇ ଠିଆ ହୋଇଛି । ରାଜମୁକୁଟ ଗ୍ରହଣ କରିବା ଲାଗି ରାମଙ୍କୁ ଅନୁରୋଧ କରିଛନ୍ତି ଭରତ । ରାମ କିନ୍ତୁ କହୁଛନ୍ତି ଯେ ସେ ପିତୃ ଆଜ୍ଞା ପାଳନ ପାଇଁ ଚଉଦ ବର୍ଷ ଜଙ୍ଗଲରେ ଅତିବାହିତ କରିବେ ଏବଂ ଏହି ସମୟ ମଧ୍ୟରେ ଭରତ ରାଜ୍ୟଭାର ଗ୍ରହଣ କରିବେ ।

**ଭରତଙ୍କ ରାଜମୁକୁଟ**

ଆଗାମୀ ଚଉଦ ବର୍ଷ କଥା ଚିନ୍ତା କଲାରୁ, ଭରତ ପୁନଶ୍ଚ ଦୁଃଖରେ ଭାଙ୍ଗି ପଡ଼ିଲେ ଏବଂ ତାଙ୍କ ମନ ବାରମ୍ବାର ପ୍ରଭୁ ଚରଣ ଆଡ଼କୁ ପ୍ରଧାବିତ ହେଲା । ଏହି ଚରଣ ଥିଲା ଦିବ୍ୟ ଅନୁକମ୍ପାର ପ୍ରତୀକ । ଏହାଦ୍ୱାରା ସମଗ୍ର ବିଶ୍ୱ ପରିଚାଳିତ ହେଉଥିଲା ଏବଂ ଏହାର ମଧ୍ୟରେ ସମସ୍ତ ଘଟଣାର ସ୍ରୋତ ହେଉଥିଲା ପ୍ରବାହିତ । ଭରତ ପ୍ରାର୍ଥନା ପୂର୍ବକ କହିଲେ, 'ହେ ପ୍ରଭୁ ! ତା' ହେଲେ ଆପଣଙ୍କ ପବିତ୍ର ପାଦରେ ପରିହିତ କରିଥିବା ପାଦୁକା ଯୁଗଳ ମୋତେ ଦାନ କରନ୍ତୁ ।' ରାମ ଏହାପରେ ନିଜର କଠଉକୁ ଭରତଙ୍କ ଆଡ଼କୁ ବଢ଼େଇ ଦେଲେ । ଭରତ ଏହା ମାଧ୍ୟମରେ କେବଳ ବର୍ତ୍ତମାନ ପାଇଁ କାହିଁକି, ଏହାର ପରବର୍ତ୍ତୀ ସମସ୍ତ କାଳରେ ଆଶୀର୍ବାଦ ରୂପେ ପାଇବେ । ଲୋତକପୂର୍ଣ୍ଣ ଚକ୍ଷୁରେ ଭରତ କଠଉକୁ ମୁଣ୍ଡ ଉପରେ ରଖି ଭାବିଲେ, 'ଏହା ହିଁ ମୋର ମୁକୁଟ ।' ଏହାପରେ ରାମଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ଭରତ ତାଙ୍କଠାରୁ ବିଦାୟ ନେଲେ । ରାମଙ୍କ ପାଦ ଦ୍ୱାରା ଉଡ଼ିଥିବା ପଥଧୂଳିରେ ଉଜ୍ଜ୍ୱଳତର ଦିଶୁଥିଲା ତାଙ୍କ ଦେହ ।

ଆଗନ୍ତୁକ ମାନଙ୍କର ପ୍ରସ୍ଥାନରେ ଅଯୋଧ୍ୟାକାଣ୍ଡର ଯବନିକା ପତନ ଘଟିଲା । ଏବଂ ଏଇଠୁ ଆରମ୍ଭ ହେଲା ଅରଣ୍ୟ କାଣ୍ଡ ।



# ଅରଣ୍ୟ କାଣ୍ଡ

ଜ୍ଞାଣକର୍ଣ୍ଣି ପାଦ

ରାମ, ଲକ୍ଷ୍ମଣ, ସୀତା-ତିନଜଣେ ଚନ୍ଦ୍ରକୂଟ ପର୍ବତ ଛାଡ଼ି ଦଣ୍ଡକାରଣ୍ୟ ପର୍ବତକୁ ଯାତ୍ରା କରିଛନ୍ତି । ସେଠାରେ ତାଙ୍କର ଭେଟ ହୋଇଛି ବିରାଧ ନାମକ ଏକ ରାକ୍ଷସ ସହ । ବିରାଧ ଦୁଇ ରାଜପୁତ୍ରଙ୍କୁ ଗିଳି ଦେବାର ଧମକ ଦେଇଛି । ରାମ ତାଙ୍କୁ ଗୋଇଠା ପ୍ରହାର କରିଛନ୍ତି । ହଠାତ୍ ରାକ୍ଷସ ତାର ପୂର୍ବ ରୂପ ଫେରି ପାଇଛି । ଏହାପରେ ରାକ୍ଷସ ନିଜ ବୃତ୍ତାନ୍ତ ବର୍ଣ୍ଣନା କରିବାକୁ ଯାଇ କହିଛି—ସେ ପୂର୍ବରୁ ଇନ୍ଦ୍ରଙ୍କ ରାଜସଭାରେ ଥିଲେ ଜଣେ ସଙ୍ଗୀତଜ୍ଞ ଏବଂ ନିଜର କାମ ବାସନା ପାଇଁ ଇନ୍ଦ୍ର ତାଙ୍କୁ ରାକ୍ଷସ ହୋଇ ଯିବାର ଅଭିଶାପ ଦେଇଥିଲେ ଏବଂ କହିଥିଲେ ଯେ-ରାମଙ୍କ ପାଦ ସ୍ପର୍ଶରେ ହିଁ ସେ ତାଙ୍କର ପୂର୍ବରୂପ ଫେରି ପାଇବେ । ନିଜର ଅଭିଶାପ ଓ ଏଥିରୁ ତାଙ୍କର ମୁକ୍ତି ପ୍ରସଙ୍ଗ ବର୍ଣ୍ଣନା କରି ବିରାଧ ରାମଙ୍କ ପ୍ରଶଂସାରେ କେତୋଟି ସଙ୍ଗୀତ ଗାୟନ କରିଛନ୍ତି ।

ଏହିତ ଚରଣ ତବ  
ଶାସ୍ତ୍ରରେ ଯାହା  
               ହୋଇଅଛି ଲିପିବଦ୍ଧ  
ବିଶ୍ୱରେ ଯା'ର  
ପ୍ରଶସ୍ତି ହୋଇଛି ବ୍ୟାପ୍ତ:  
କେତେ ଯେ ବିଶାଳ  
କେତେ ଅନୁପମ  
               ତମର ସେ ପୂର୍ଣ୍ଣରୂପ !

ଈଶ୍ୱର କେବଳ ନିର୍ଜୀବ ପ୍ରକୃତିରେ ଅବସ୍ଥାନ କରନ୍ତି ନାହିଁ, ସେ ପ୍ରତ୍ୟେକ ପ୍ରାଣୀଙ୍କ ଜୀବନ ଓ ଚେତନାରେ ପରିବ୍ୟାପ୍ତ ଥାନ୍ତି । ପ୍ରାଣୀମାନେ ତାଙ୍କୁ ଜାଣିପାରୁ ନଥିବା ହେଉଛି ଏକ ରହସ୍ୟ । ମନେହୁଏ, ଆଦାନ ପ୍ରଦାନ ନିୟମ ଦ୍ୱାରା ସ୍ରଷ୍ଟା ଓ ସୃଷ୍ଟିର ସମ୍ପର୍କ ପରିଚାଳିତ ହୁଏ ନାହିଁ ।

ଏମିତି ବାତୁଳିଆ ନାହିଁ ଜାଣେ ନାହିଁ କିଏ ତାର ମାତା
ଗାଇ କି ଜାଣେନା କିଏ ଅଟେ ତା ନିଜ ବାଳୁତ
ହେ ଈଶ୍ୱର ! ଆପଣ ତ ମାତା ଏଇ ସଂସାରର
ଜାଣନ୍ତି ଆପଣ କିଏ ଆପଣଙ୍କ ପୁତ୍ର ଏକ ଏକ
କିନ୍ତୁ କି' ଦାରୁଣ ଏହା !
ଆପଣଙ୍କ ପୁତ୍ରଗଣ ଜାଣନ୍ତିନି ସେମାନଙ୍କ ସ୍ରଷ୍ଟା !
ଅଜ୍ଞତାର ଇନ୍ଦ୍ରଜାଲ ଅନ୍ଧ କରେ ସେମାନଙ୍କ ନେତ୍ର
ଭୁଲନ୍ତି ଆପଣ ! ଆପଣ କି ଆସନ୍ତିନି, ନ ଆସିବା ବିନା !

କି ଜ୍ଞାନୀ, କି ଅଜ୍ଞାନ, ସମସ୍ତଙ୍କ ହୃଦୟରେ ଈଶ୍ୱର ଅବସ୍ଥାନ କରନ୍ତି । ଦିବ୍ୟ ଜ୍ଞାନ ଉଦ୍ଭବ ହେଲେ ଅଜ୍ଞାନ ମଧ୍ୟ ଈଶ୍ୱରଙ୍କ ସତ୍ତାକୁ ଉପଲବ୍ଧି କରି ପାରିଥାଏ । ସୁତରାଂ ଏହା କହିଲେ ଠିକ୍ ହେବ ନାହିଁ ଯେ, ଈଶ୍ୱର କେବଳ ଉପଲବ୍ଧିର ମୁହୂର୍ତ୍ତରେ ଦେଖା ଦିଅନ୍ତି । ଏହି ସତ୍ୟକୁ କବି ବିରୋଧ ମୁହଁରେ ଏକ ଅଲୌକିକ ବିରୋଧାଭାସ ମାଧ୍ୟମରେ ବର୍ଣ୍ଣନା କରିଛନ୍ତି, 'ଆପଣ ତ ଆସନ୍ତିନି, ନ ଆସିବା ବିନା ।' କବିଙ୍କ ବିଚାରରେ, କୌଣସି ବ୍ୟକ୍ତି ଈଶ୍ୱରଙ୍କ ସ୍ଥିତି ସମ୍ବନ୍ଧରେ ନିଜର ବ୍ୟକ୍ତିଗତ ଉପଲବ୍ଧି ପାଇବା ପୂର୍ବରୁ ଈଶ୍ୱର ତା ହୃଦୟରେ ନିଜର ନିରପେକ୍ଷ ସ୍ଥିତି ମାଧ୍ୟମରେ ପ୍ରକଟ ହୋଇଥାନ୍ତି ।

ବିରାଧଙ୍କ ପ୍ରସ୍ଥାନ ପରେ, ତିନିହେଁ ଋଷି ଶରଭଙ୍ଗ ଆଶ୍ରମ ଦିଗକୁ ଗଲେ । ଆଶ୍ରମର ଦ୍ୱାରଦେଶରେ ଦେବରାଜ ଇନ୍ଦ୍ରଙ୍କ ପାଦଚିହ୍ନ ଦେଖିବାକୁ ପାଇଲେ ରାମ । ଇନ୍ଦ୍ର ଆଶ୍ରମ ଭିତରେ ଥିବେ ବୋଲି ଭାବି ସେ ଆଶ୍ରମ ଭିତରେ ପ୍ରବେଶ କଲେ । ବାଲ୍ମୀକିଙ୍କ 'ରାମାୟଣ'ରେ ବର୍ଣ୍ଣନା ଅଛି ଯେ—ରାମଙ୍କୁ ଦେଖି ଇନ୍ଦ୍ର ଦ୍ରୁତ ସେ ସ୍ଥାନ ଛାଡ଼ି ଚାଲି ଯାଇଛନ୍ତି । କାରଣ, ତାଙ୍କର ଆଶଙ୍କା ଥିଲା ଯେ ତାଙ୍କର ସାକ୍ଷାତ ହୁଏତ ପୃଥିବୀ ପୃଷ୍ଠରେ ରାମଙ୍କ ଉପରେ ନ୍ୟସ୍ତ କାର୍ଯ୍ୟ ସମ୍ପାଦନରେ ବିଳମ୍ବ ଘଟିପାରେ । କିନ୍ତୁ କମ୍ବନଙ୍କ ବର୍ଣ୍ଣନାରେ ଇନ୍ଦ୍ର ରାମଙ୍କୁ ସାକ୍ଷାତ କରି ଦେବତାଙ୍କ ଅନୁରୋଧକ୍ରମେ ପାପର ଧ୍ୱଂସ ପାଇଁ ମଣିଷ ଭାବେ ଜନ୍ମଲାଭ କରିଥିବା ଯୋଗୁ ତାଙ୍କୁ ନିଜର କୃତଜ୍ଞତା ଜ୍ଞାପନ କରିଛନ୍ତି । ଜାତିଗତ ପୃଷ୍ଠଭୂମିରେ ସଂସାରୀ ମଣିଷର ଭାଗ୍ୟ ଉପରେ ନିଜର ବିଚାର ପ୍ରକଟ କରିବାକୁ ଏପରି ସାକ୍ଷାତ କବିଙ୍କୁ ଯଥେଷ୍ଟ ସୁଯୋଗ ଦେଇଛି । ରାମଙ୍କ ପ୍ରଶସ୍ତି ଗାନକରି ଇନ୍ଦ୍ର କହିଛନ୍ତି—

'ତମେ ତ ଆଲୋକ
କରେ ଯାହା ଭେଦ ଆଉ ସିକ୍ତ
ସେ ସିକ୍ତତା କିନ୍ତୁ କେବେ
ଛୁଏଁ ନାହିଁ ତମ ଅବୟବ ।'

ଶତ୍ରୁଦ୍ୱାରା ହୋଇ ତ୍ରସ୍ତ
ନେଇଥିଲୁ ତମରେ ଶରଣ
କରିଥିଲୁ ତୁମର ବନ୍ଦନ,
ତମ ଦତ୍ତ ଆଶୀର୍ବାଦ
ଯାହା ତୁମେ ପାଳିବାକୁ ଲଭିଚ ଜନମ !
ହେ ଈଶ୍ୱର !
ଧ୍ୟାଏ ତୁମ ଦୁଇ କମଳ ଚରଣ
ଯାହା ତୁମେ ଥାପିଅଛ ଏ ପୃଥିବୀ ତାର :

## କଷ୍ଟ ସହନ

ଭକ୍ତଙ୍କ ପ୍ରତି ଥିବା ଈଶ୍ୱରଙ୍କ ଅନୁକମ୍ପା ଦେଖି ଇନ୍ଦ୍ର ବିଚଳିତ ହୋଇ ପଡ଼ିଲେ । ମଣିଷଙ୍କ ମୁକ୍ତି ପାଇଁ ନିଜର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଈଶ୍ୱର ଏ ପୃଥିବୀ ଓ ସମସ୍ତ ସହ ନିଜକୁ ସୀମିତ କରି ମଣିଷଙ୍କ ସମସ୍ତ ସୁଖ ଦୁଃଖ ସହ ସାମିଲ ହୋଇଛନ୍ତି ।

ଇନ୍ଦ୍ର ପୁନଶ୍ଚ ପ୍ରଭୁଙ୍କ ପ୍ରଶସ୍ତି ଗାନ କରିଛନ୍ତି :

ଏମିତି ତ କେହୁ ନାହିଁ ଏ ମର୍ତ୍ତ୍ୟ ମଣ୍ଡଳେ
ଯିଏ କେବେ ଆସିନାହାଁ ଈଶ୍ୱର ଶରଣେ ।
ଏମିତି ବି ନାହାଁ ଜନ ଏ ସାରା ବିଶ୍ୱରେ
ଯିଏ କେବେ ପରିପୂଜେ ତାଙ୍କ ଅସ୍ତିତ୍ୱରେ ।
ସିଏ ତ ନୁହଁଇ ତେଜ ନୁହଁଇ ଅନ୍ଧାର
ନୁହେଁ ଉଚ୍ଚ, ନୁହେଁ ନୀଚ, ନୁହେଁ ମୁଖ୍ୟମୁକ୍ତ ।
ମରଣ ତ ନୁହେଁ କେବେ ସ୍ୱାର ସହଚର
ଏହାର ଆଦି ନାହିଁ, ମଧ୍ୟ ଅନ୍ତ ନାହିଁ
ନୁହେଁ ଏହା କେବେ ପୂର୍ବ, କେବେ ଅବା ପର ।
ପ୍ରଭୁ ହେ ! ଏହା ଯଦି ହୁଏ ଆଜି ତବ ପରିଣତି
କିଏ ବା ଗାଇ ପାରିବ ତବ ଅପକୀର୍ତ୍ତି
କ୍ଷମା ଆଜ୍ଞା ମନାକର ଦେବନାହିଁ ମୁକ୍ତି
ପୃଥିବୀରେ ଜନମିଛ କାନ୍ଧେ ଧନୁ ବୋହି
ଲୋହିତ ପାଦରେ ତମେ ଚାଲୁଅଛ ପଥ
ଦୁଃଖରେ ଦିଶୁଛି ଲୀଳ ତବ ଅବସ୍ଥିତ ।
ଶୋଇଅଛ ପ୍ରଭୁ ତମେ ଅନନ୍ତ ସମୁଦ୍ରେ
ପ୍ରତିଦାନ ପାଅ କ'ଣ ଦୁଃଖ ଲାଘିବାରେ ।

## ଅନାଦର ଆକଳନ

ନିଜ ଭକ୍ତିର ପ୍ରଗାଢ଼ତାରେ ଇନ୍ଦ୍ର ଈଶ୍ୱରଙ୍କ ଅନାଦିତ୍ୱ ମାପିବା ପାଇଁ ତାଙ୍କ କଳ୍ପନାରେ ଏକ ବିରାଟ ପାତ୍ର ସୃଷ୍ଟି କରିଛନ୍ତି । କିନ୍ତୁ ତାଙ୍କର ଉପଲବ୍ଧି ହୋଇଛି ଯେ— ତାଙ୍କର ପାତ୍ର ଅନାଦିତ୍ୱ ଆକଳନ କରିବାରେ ଅସମର୍ଥ । ଏଣୁ ସେ ଗାଇଛନ୍ତି—

ଏ ସୃଷ୍ଟିରେ ସୃଷ୍ଟିକର୍ତ୍ତା ସେ ଯେ ପରଂବ୍ରହ୍ମ
ସମସ୍ତ ଉତ୍କର୍ଷ ନେଇ ସବୁ ଗ୍ରହଙ୍କର
ତିଆରି କରନ୍ତୁ ଏକ ମାପିବାର ପାତ୍ର
ତହୂରେ ମାପନ୍ତୁ ତୁମେ ଯୁଗ ପରେ ଯୁଗ
ତଥାପି ରହିବ ତୁମେ ଅକ୍ଷୟ, ଅମାପ ।
ପୃଥିବୀକୁ କରି ପାତ୍ର, ଦଧି ସାଗରକୁ
ମନ୍ଥନର ଦଣ୍ଡ କରି ମେରୁ ପର୍ବତକୁ
ମନ୍ଥିତ ତ ଖୁବ୍ ତୁମେ ବିଶାଳ ଜଳଧି
ପଦ୍ମ-ହସ୍ତେ ପାଇଅଛ ଯନ୍ତ୍ରଣା ଅବଧି
ଦେଇଅଛ ମନୁଷ୍ୟରେ ଅମୃତର ଖଣ୍ଡ
ରାକ୍ଷସେ କି ଭଲ ହେବେ ନାହିଁ ତବ ଦାସ ।

ଏହାପରେ ରାମ, ଲକ୍ଷ୍ମଣ ଓ ସୀତା ଅଗସ୍ତ୍ୟଙ୍କର ପାର୍ବତ୍ୟ ଆଶ୍ରୟସ୍ଥଳକୁ ପ୍ରସ୍ଥାନ କଲେ । ଏହି ପାର୍ବତୀୟ ସ୍ଥଳୀଟି ବହୁ ପାର୍ବତୀୟ ପ୍ରପାତଦ୍ୱାରା ମୁଖରିତ ଥିଲା । ପ୍ରପାତଗୁଡ଼ିକର ଜଳ ଏପରିକି 'ମଧୁଠୁ ବି ଅଧିକ ସୁମିଷ୍ଟ' ଲାଗୁଥିଲା ।

## ଯୋଗ ହସ୍ତୀ

ଋଷି ଅଗସ୍ତ୍ୟଙ୍କର ଜ୍ଞାନ ବା ବିଦ୍ୟା ଅତି ପ୍ରଗାଢ଼ ଓ ବ୍ୟାପକ ଥିଲା । ସେ କେବଳ କଳା, କବିତା ବା ଧାର୍ମିକ ସଂସ୍କୃତିରେ ପ୍ରବୀଣ ନ ଥିଲେ, ବିଜ୍ଞାନ, ଭେଷଜ ବିଦ୍ୟା ଶସ୍ତ୍ରଶାସ୍ତ୍ର ଓ ସେତୁ ନିର୍ମାଣ, ଜଳସେଚନ ତଥା ପାର୍ଥିବ ଜ୍ଞାନର ଅନ୍ୟାନ୍ୟ ସମସ୍ତ ବିଭାଗରେ ତାଙ୍କର ପ୍ରଚଣ୍ଡ ପାରଦର୍ଶିତା ଥିଲା । ଅଗସ୍ତ୍ୟ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବା ପାଇଁ ଦୂରଦୂରାନ୍ତରୁ ଛାତ୍ରମାନେ ତିରୁନେଲ୍ ଭେଲି ଜିଲ୍ଲାର ପୋଡ଼ିକାଇ ପାହାଡ଼ ନିକଟକୁ ଆସୁଥିଲେ । ଅଗସ୍ତ୍ୟ ଋଷି ଥିଲେ ପ୍ରଜ୍ଞା ଓ ସଂସ୍କୃତିର ମୂର୍ତ୍ତିମନ୍ତ ପ୍ରତୀକ । ରାମଙ୍କୁ ତାଙ୍କ ଆଶ୍ରମ ନିକଟବର୍ତ୍ତୀ ଅଞ୍ଚଳରେ ଥିବାର ଶୁଣି ପାଖେଇଟି ଆଣିବା ଲାଗି ତାଙ୍କ ନିକଟକୁ ଗଲେ ଅଗସ୍ତ୍ୟ । ବାଲ୍ମୀକିଙ୍କ ଅଗସ୍ତ୍ୟ କିନ୍ତୁ ରାମଙ୍କ ନିକଟକୁ ତାଙ୍କର ଏକ ଦୂତ ପ୍ରେରଣ କରିଛନ୍ତି ।

ତାମିଲ ଦେଶର ପରମ୍ପରା ଅନୁଯାୟୀ ଅଗସ୍ତ୍ୟ ମଣିଷର ଜ୍ଞାନ ସମ୍ପର୍କରେ ତାମିଲ ଭାଷାରେ ଅନେକ ରଚନା ପ୍ରକାଶ କରିଥିଲେ, କିନ୍ତୁ ଦକ୍ଷିଣ ତାମିଲନାଡ଼ୁର କେତେକ ଅଂଶ ସମୁଦ୍ରରେ ବୁଡ଼ିଗଲା ବେଳେ ଏଗୁଡ଼ିକ ତା ସହ ନଷ୍ଟ ହୋଇଯାଇଛି । ଅଗସ୍ତ୍ୟଙ୍କୁ ବର୍ଣ୍ଣନା କରିବାକୁ ଯାଇ କମ୍ବନ କହିଛନ୍ତି ଯେ, ଅଗସ୍ତ୍ୟ ହେଉଛନ୍ତି ଏମିତି ଏକ ବ୍ୟକ୍ତିତ୍ୱ ଯେ, ବିଷ୍ଣୁଙ୍କ ପରି ତାମିଲ ରୂପକ ଦୀର୍ଘ ମାପଦଣ୍ଡ ନେଇ ବିଶ୍ୱର ଉଚ୍ଚତା ମାପିଥିଲେ ।

ପରବର୍ତ୍ତୀ ପଦ୍ୟରେ, କମ୍ବନ ଯେଉଁ ଉପାଖ୍ୟାନର ଅବତାରଣା କରିଛନ୍ତି, ତାହାର ପ୍ରତୀକାତ୍ମକ ମହତ୍ତ୍ୱ ରହିଛି । ବହୁବର୍ଷ ପୂର୍ବେ ଅସୁରମାନଙ୍କ ଏକ ଗୋଷ୍ଠୀ ପୃଥିବୀର ସମସ୍ତ ଆଧ୍ୟାତ୍ମିକ ଓ ନୈତିକ ସମ୍ପତ୍ତିକୁ ଏକାଠି କରି ସେଗୁଡ଼ିକ ସହ ସମୁଦ୍ରର ତଳ ଦେଶକୁ ବୁଡ଼ି ଯାଇଥିଲେ । ଏହା ଫଳରେ, ବୁଡ଼ି ଯାଇଥିବା ସମ୍ପତ୍ତିକୁ ଉଦ୍ଧାର କରିବା ପାଇଁ ଦେବତାମାନେ ଅଗସ୍ତ୍ୟଙ୍କୁ ତାଙ୍କ ସାହାଯ୍ୟ ପାଇଁ ପ୍ରାର୍ଥନା କଲେ । ଅଗସ୍ତ୍ୟ ସେମାନଙ୍କ ପ୍ରାର୍ଥନା ଶୁଣିଲେ । ସମୁଦ୍ରର ସମସ୍ତ ଜଳକୁ ନିଜ ହସ୍ତ ଅଞ୍ଜଳରେ ଧାରଣ କରି ସମସ୍ତ ଜଳକୁ ପିଇ ସମୁଦ୍ରକୁ ଶୁଖେଇ ଦେଇଥିଲେ । ଏହାପରେ ଦେବତାମାନଙ୍କର ଅନୁରୋଧ କ୍ରମେ ସେ ନିଜ ଉଦରରେ ଥିବା ସମସ୍ତ ପାଣିକୁ ମୁଖ ବାଟରେ ନିଷ୍କାସିତ କରି ଦେଇଥିଲେ । ଫଳତଃ ମଣିଷଙ୍କ ନିମନ୍ତେ ଉଦ୍ଦିଷ୍ଟ ସମ୍ପତ୍ତିକୁ ପୁନରୁଦ୍ଧାର କରାଯାଇ ପାରିଥିଲା ।

ପଞ୍ଚଶତାବ୍ଦୀ ପୂର୍ବେ ମିରୋନୋଙ୍କ ଅନୁସୃତ ପଦ୍ଧତିରେ ଏହି କମ୍ବଦନ୍ତୀକୁ ରସମଣି ଟି. କେ. ଚଦାମ୍ବରନାଥ ମୁଦଲିୟର ବ୍ୟାଖ୍ୟା କରିଛନ୍ତି । ଗ୍ରୀକ କଳା ଓ ସାହିତ୍ୟ ଅତୀବ ସୂକ୍ଷ୍ମ ଓ ଜଟିଳ । କିନ୍ତୁ ଗ୍ରୀକ ପରମ୍ପରା ସହିତ ସମ୍ପର୍କ ନଥିବା ଇଟାଲୀୟମାନେ ଏହାକୁ ଭୁଲ ଭାବେ ବ୍ୟାଖ୍ୟା କରିଛନ୍ତି । ସୌନ୍ଦର୍ଯ୍ୟ ଶାସ୍ତ୍ରରେ ରୁଚି ନଥିବା ଦଳେ ଇଟାଲୀୟ ବ୍ୟାକରଣବିତ୍ ଓ ଟୀକାକାର ଗ୍ରୀକ କଳାର ବିସ୍ତୃତ-ଆଲୋଚନା କଲାବେଳେ ନିଜର ବନ୍ଧ୍ୟାଜ୍ଞାନକୁ ହିଁ ବ୍ୟବହାର କରିଛନ୍ତି । ଗ୍ରୀକ୍ ସଂସ୍କୃତିର ଅନୁପମ ସୂକ୍ଷ୍ମ ବିଭବକୁ ଛୁଇଁ ପାରିବାକୁ ସମର୍ଥ ହୋଇପାରି ନାହାନ୍ତି ଏମାନେ । ଫଳତଃ ଏହି କଳା-ବିରୋଧୀ ଅସୁରମାନେ ନିଜର ଉପଲବ୍ଧି ନଥିବାରୁ ଗ୍ରୀକ୍‌ମାନଙ୍କର ଏହି ମହାନ କଳାତ୍ମକ ସାଫଲ୍ୟକୁ ନଷ୍ଟ ବିନଷ୍ଟ କରି ଦେଇଛନ୍ତି । ଏହି ଅନ୍ଧକାରମୟ ସମୟରେ ଜନ୍ମଗ୍ରହଣ କରିଥିଲେ ମିରୋନୋ । ସେ ଗଭୀର ମନୋନିବେଶ ସହ ଗ୍ରୀକ୍ କଳାକୁ ଅଧ୍ୟୟନ କରିଥିଲେ । ଇଟାଲୀୟ ବ୍ୟାକରଣବିତ୍ ଓ ଟୀକାକାରମାନଙ୍କ ଭୁଲ ଦର୍ଶାଇ ଗ୍ରୀକ୍ କଳାର ଅନ୍ତର୍ନିହିତ ଆତ୍ମା ଉପରେ ଆଲୋକପାତ କରିଥିଲେ । ଅନେକ ସମୟରେ ସଂସ୍କୃତିର ଇତିହାସରେ ଆମେ ଏପରି ଲକ୍ଷଣମାନ ଦେଖିଥାଉ, ଯେତେବେଳେ ମହାନ୍ କଳାତ୍ମକ ଓ ଆଧ୍ୟାତ୍ମିକ କାର୍ଯ୍ୟକଳାପ

ଭୁଲ ଅନୁଶୀଳନର ଅନ୍ଧକାର ଭିତରେ ଲୁଚି ରହିଥାଏ । ଟି.କେ. ଚିଦାମ୍ବରନାଥ ମୁଦଲିୟରଙ୍କ ବିଚାରରେ, ଅଗସ୍ତ୍ୟ ଅସଭ୍ୟମାନଙ୍କ କବଳରୁ କଳା ଓ ଜ୍ଞାନକୁ ନିଶ୍ଚିତ ଭାବେ ଉଦ୍ଧାର କରିଥିବେ । ସମୁଦ୍ରର ଜଳପାନ କରି ପୁନଶ୍ଚ ତାକୁ ଦେବତାଙ୍କ ଅନୁରୋଧ କ୍ରମେ ନିଷ୍କାସନ କରିବାର ଉପାଖ୍ୟାନ ସଂସ୍କାର ଓ ପୁନର୍ବିଚାରର ପ୍ରତୀକ ନିଶ୍ଚୟ ।

ପରବର୍ତ୍ତୀ କାବ୍ୟରେ କମ୍ୱନ ପ୍ରତୀକାତ୍ମକ ଭାଷା ବ୍ୟବହାର କରି ଅଗସ୍ତ୍ୟଙ୍କର ଆଧ୍ୟାତ୍ମିକ କୃତି ବର୍ଣ୍ଣନା କରିଛନ୍ତି । ମନୁଷ୍ୟମାନେ 'ଏକାନ୍ତ ମାର୍ଗ' (Unitive Way) ଖୋଜି ଖୋଜି ଅଗସ୍ତ୍ୟଙ୍କୁ ପଚାରିଲେ, 'ଈଶ୍ୱରଙ୍କ ନିକଟରେ ପହଞ୍ଚିବାର କ୍ଳେଶଶୂନ୍ୟ ମାର୍ଗ କେଉଁଟି ?' କୌଣସି ବାଚନିକ ଉତ୍ତର ନଦେଇ ଅଗସ୍ତ୍ୟ ଏହାର ପ୍ରମାଣ କାବ୍ୟରେ ପ୍ରକାଶ କରିଥିଲେ—

ସେହି ଯେ ମନ୍ଦିର ପର୍ବତ
ଯେ' କରେ ଆକାଶେ ବିଭକ୍ତ
ତା ଚତୁଃପାର୍ଶ୍ୱେ ମେଘଙ୍କର
ଦୋହଲୁଥାଏ ଲମ୍ବା ହାର ।
ଅଗସ୍ତ୍ୟ ଚଢ଼ି ସେ ପର୍ବତେ
ଥାପିଲେ ପାଦ ଅତି ଧୀରେ ।
ପର୍ବତ ଦବିଲା ତଳକୁ
ଛୁଇଁଲା ଶେଷେ ପାତାଳକୁ
ଅଗସ୍ତ୍ୟ ଠିଆ ଶୃଙ୍ଗପରେ
ଦିଶନ୍ତି ଯୋଗ-ହସ୍ତୀ ପ୍ରାୟେ ।

ଏତାଦୃଶ ପ୍ରମାଣ ଜରିଆରେ ପ୍ରଶ୍ନକାରୀ ମନୁଷ୍ୟମାନେ ନିଶ୍ଚିତ ଭାବେ ଆଧ୍ୟାତ୍ମିକ ବିକାଶ ଜନିତ ମୂଳ ସମସ୍ୟାର ସମାଧାନ-ମାର୍ଗ ପାଇ ପାରିଥିବେ । ମନୁଷ୍ୟ ଓ ଈଶ୍ୱରଙ୍କ ମଧ୍ୟରେ ଯେଉଁ ବ୍ୟକ୍ତ ଯବନିକା ଅଛି ତାହା ହିଁ ହେଉଛି ମନୁଷ୍ୟର ଅହଂ ଯାହାକୁ କମ୍ୱନ ନଭସ୍ପର୍ଶୀ ମନ୍ଦିର ପର୍ବତ ବୋଲି ବର୍ଣ୍ଣନା କରିଛନ୍ତି । କିନ୍ତୁ ଏ ପର୍ବତ ମିଥ୍ୟା ବା ଅସାର ହେଲେ ମଧ୍ୟ ମଣିଷ ମନର ଏହା ଏକ ଅନତିକ୍ରମ୍ୟ ଚହାଙ୍କନ ଏବଂ କାମ, କ୍ରୋଧ ଓ ମାୟା ଭଳି ଅଜ୍ଞାନ-ବାଦଲ ଦ୍ୱାରା ଏହା ଆଚ୍ଛନ୍ନ । ମଣିଷ ଯେଉଁ ମୁହୂର୍ତ୍ତରେ ଦୃଢ଼ ଭାବେ ଏହା ଉପରେ ତାର ପାଦ ସ୍ଥାପନ କରେ, ସେହି ମୁହୂର୍ତ୍ତରେ ସେ ଈଶ୍ୱରଙ୍କୁ ଉପଲବ୍‌ଧି କରି ପାରିଥାଏ । ଏହା ଏକ ରହସ୍ୟାତ୍ମକ ପ୍ରକ୍ରିୟା । ଏହା 'ହଠଯୋଗ' ପ୍ରକ୍ରିୟା ପରି ନୁହେଁ । ଏଥିରେ କୌଣସି ଶାରୀରିକ କଷ୍ଟ ଅନୁଭବ କରି ହୁଏନାହିଁ । ଅଗସ୍ତ୍ୟ ଏହାକୁ ଈଶ୍ୱରଙ୍କ "କଷ୍ଟମୁକ୍ତ ପଥ'' ବୋଲି ବର୍ଣ୍ଣନା କରିଛନ୍ତି ।

ଅଗସ୍ତ୍ୟଙ୍କ ବିଷୟରେ ଆଉ ଏକ ଉପାଖ୍ୟାନର ଅବତାରଣା କରିଛନ୍ତି କମ୍ବନ । ଦକ୍ଷିଣ ଭାରତର କୌଣସି ଭୂତାତ୍ତ୍ୱିକ ଆଲୋଡ଼ନ ଏ କମ୍ବଦନ୍ତୀର ଆଧାର । ଶିବ ଓ ପାର୍ବତୀଙ୍କ ବିବାହ ହିମାଳୟରେ ଅନୁଷ୍ଠିତ ହେବାର ଥାଏ । ସମଗ୍ର ମାନବ ଜାତି ଏ ବିବାହ ଦେଖିବା ପାଇଁ ହିମାଳୟରେ ସମବେତ ହୋଇଥାନ୍ତି । ଫଳତଃ, ଏତେ ଲୋକଙ୍କ ଅଲୌକିକ ଭାର ସହି ନପାରି ହିମାଳୟ ତଳକୁ ଦବିଯାଏ । ତତ୍‌କ୍ଷଣାତ୍, ଶିବ ଅଗସ୍ତ୍ୟଙ୍କୁ ଡକାଇ ପଠାନ୍ତି ଏବଂ ତାଙ୍କୁ ଦାକ୍ଷିଣାତ୍ୟକୁ ଯିବାଲାଗି ଅନୁରୋଧ କରନ୍ତି । ଅନୁରୋଧ ରକ୍ଷାକରି ଅଗସ୍ତ୍ୟ ପୋଡ଼ିକାଇ ପର୍ବତରେ ପହଞ୍ଚିଛନ୍ତି । ସେଠି ତାଙ୍କର ଆବିର୍ଭାବ ଓଜନରେ ସମାନତା ଆଣି ଦେବାରେ ସକ୍ଷମ ହୋଇଛି । ଫଳରେ ହିମାଳୟ ଉପରକୁ ଉଠିଯାଇଛି ଓ ଭାରସାମ୍ୟ ପୁନଃ ପ୍ରତିଷ୍ଠିତ ହୋଇଛି । ଏ ଉପାଖ୍ୟାନର ଗୁରୁତ୍ୱ ଲୋକଙ୍କ ଓଜନରେ ନୁହେଁ ବରଂ ମୂଲ୍ୟବୋଧରେ ହିଁ ଉଦ୍ଦିଷ୍ଟ । ଅଗସ୍ତ୍ୟ ଥିଲେ ଏକ ସାଂସ୍କୃତିକ ଶକ୍ତି—ଏହା ହିଁ ତାଙ୍କର ମୂଲ୍ୟବୋଧ, ଯାହା ଶିବ ଓ ସମଗ୍ର ମାନବ ଜାତିର ମୂଲ୍ୟବୋଧ ସହ ସମାନ ବୋଲି ଧରି ପାଇଥାଏ ।

ଏ ହେଉଛନ୍ତି ସେଇ ଅଗସ୍ତ୍ୟ, ଯେ ପ୍ରଗାଢ଼ ଜ୍ଞାନ ଓ ଆଧ୍ୟାତ୍ମିକ ଶକ୍ତିର ଅଧିକାରୀ, ଏବଂ ନିଜ ଆଶ୍ରମ ଭିତରେ ପ୍ରବେଶ କରିଥିବା ରାମଙ୍କୁ ପାଛୋଟି ନେବାଲାଗି ଆଗେଇ ଯାଇଛନ୍ତି । ତାଙ୍କର ମନେ ହୋଇଛି, ତାଙ୍କର ସମସ୍ତ ତପର ପରିଶେଷ ଓ ଫଳଶ୍ରୁତି ହିଁ ରାମଙ୍କ ପ୍ରବେଶ । ରାମଙ୍କ ଭିତରେ ଭଗବାନଙ୍କ ଦର୍ଶନ ପାଇବେ, ଏହା ଚିନ୍ତାକରି ଅଗସ୍ତ୍ୟ ପୁଲକିତ ହୋଇଛନ୍ତି । ସେ ଗାଇଛନ୍ତି—

ବ୍ରହ୍ମା ଆଣନ୍ତୁ ଋଗ୍‌ବେଦ
ଅନ୍ୟାନ୍ୟ ସବୁ ଧର୍ମଗ୍ରନ୍ଥ
ଜ୍ଞାନର ପେଷଣ-ଯନ୍ତ୍ରରେ
କଠିନେ ପେଷନ୍ତୁ ଏହାରେ
କିବା ଦିବସ କିବା ରାତି
ଏ କାର୍ଯ୍ୟେ ରହନ୍ତୁ ସେ ବ୍ରତୀ
ତଥାପି ସ୍ୱା'ର 'ବାସ୍ତବତା'
କାହୁଁ ପାଇବେ ତା' ଇୟତ୍ତା
କିନ୍ତୁ 'ଅଜଣା ପରିମାଣ'
କରିଛି ଶରୀର ଧାରଣ
ଆସିଛି କରିବ ଆଳାପ
ସମୀପେ ବସି ମୋ ସହିତ ।

କମ୍ବନ ଏମାନଙ୍କର ସାକ୍ଷାତ୍କାରକୁ ଅତି ସୁନ୍ଦର କାବ୍ୟରେ ବର୍ଣ୍ଣନା କରିଛନ୍ତି—

ଯେ ଦିବ୍ୟ ଅପରୂପ କାନ୍ତି
ଋଷିଙ୍କ ଚରଣେ ପ୍ରଣମି
ଋଷି ଯେ ଠିଆହୋଇ ସ୍ଥିର
ପ୍ରେମେ କରିଲେ ଆଲିଙ୍ଗନ
ନୟନରୁ ବହେ ଲୁହ ଧାର
କହିଲେ ଆଦର ବଚନ
ରଚନା କରି ତାମିଲରେ
ଋଷି ଯେ ଅମର ହୋଇଲେ ।

ରାମଙ୍କ ଆଶ୍ରମ-ପ୍ରବେଶକୁ ଅଗସ୍ତ୍ୟଙ୍କ ଆଶ୍ରମରେ ଋଷିମାନେ ଆଡ଼ମ୍ବରରେ ପାଳନ କଲେ । ରାମଙ୍କ ସମ୍ମାନରେ ଏକ ଭୋଜିର ଆୟୋଜନ କରାଗଲା । ଭୋଜି ପରେ ଅଗସ୍ତ୍ୟ ରାମଙ୍କୁ ତାଙ୍କ ଆଶ୍ରମରେ ଭ୍ରମଣ କରିବାକୁ ଅନୁରୋଧ କଲେ । ରାମ ପାପର ସମସ୍ତ ଶତ୍ରୁଙ୍କୁ ମୂଳୋତ୍ପାଟନ କରିବାର ଶପଥ ନେଇ ଋଷିଙ୍କ ଆଶ୍ରମ ବାହାର କୌଣସି ଏକ ସମର ଉପଯୋଗୀ ସ୍ଥାନରେ ଅବସ୍ଥାନ କରିବାକୁ ଅଗସ୍ତ୍ୟଙ୍କର ଅନୁମତି ମାଗିଲେ । ଏହି ସ୍ଥାନରେ ସେ ରାକ୍ଷସମାନଙ୍କୁ ଭେଟି ସେମାନଙ୍କ ସହ ଯୁଦ୍ଧ କରିବେ ବୋଲି କହିଲେ । ରାମଙ୍କ ଏ ପ୍ରସ୍ତାବକୁ ଅନୁମୋଦନ କରି ଋଷି ତାଙ୍କୁ ଦୀର୍ଘଦିନ ଧରି ନିଜ ଦାୟିତ୍ୱରେ ରଖିଥିବା ଶିବଧନୁ ଉପହାର ଦେଲେ । ଏହା ବ୍ୟତୀତ, ଶିବ ଯେଉଁ ଶକ୍ତିମାନ୍ ତୀରରେ ଶୂନ୍ୟସ୍ଥିତ ତିନୋଟି ସହର ଧ୍ୱଂସ କରିଥିଲେ, ସେ ତୀରକୁ ମଧ୍ୟ ଦାନ କଲେ । ଉପହାର ଦେଲା ପରେ ଗୋଦାବରୀ ନଦୀର ଉତ୍ପତ୍ତିସ୍ଥଳ ପଞ୍ଚବଟୀ ବଣରେ ଅବସ୍ଥାନ କରିବାକୁ ରାମଙ୍କୁ ପ୍ରସ୍ତାବ ଦେଲେ ଋଷି । କମ୍ବନଙ୍କ ଅଗସ୍ତ୍ୟ ପଞ୍ଚବଟୀର ଅପୂର୍ବ ପାରିପାର୍ଶ୍ୱିକ ଦୃଶ୍ୟକୁ ଏକ ଅନୁପମ ଶୈଳୀରେ ବର୍ଣ୍ଣନା କରିଛନ୍ତି :

ସେଠି ଉତୁଙ୍ଗ ବୃକ୍ଷମାନ
ତା'ପରେ ଶୋଭଇ ବାଉଁଶ
ତା'ପରେ ପର୍ବତଙ୍କ ଶୃଙ୍ଗ
ପାର୍ଶ୍ୱରେ ଦିଶେ ତୋଟାମାଳ
ତା'ମଧ୍ୟେ ଫୁଲ ମାଳ ମାଳ
ଝୁଲନ୍ତି ଆଇ ପାଖ ପାଖ
ବହଇ ଝରଣା କୋମଳ
ଘୂମନ୍ତି ତରଙ୍ଗ ତା' ଜଳ
ଏପରି ଦିବ୍ୟ ପରିବେଶ
ତା' ମଧ୍ୟେ ପଞ୍ଚବଟୀ ବଣ ।

ଏପରି ବର୍ଣ୍ଣନା କରି ଋଷି ରଘୁନନ୍ଦନଙ୍କୁ ବିଦାୟ ଦେଲେ । ଋଷିଙ୍କ ଆଶୀର୍ବାଦ ଲାଭ କରି ସେମାନେ ପଞ୍ଚବଟୀର ଉତ୍ତର ଦିଗକୁ ଗମନ କଲେ ।

ଗମିଲେ କୋଶ କୋଶ ଦୂର
ଡେଇଁଣ ଝରଣା ସୁନ୍ଦର,
କେହି ଯାଆନ୍ତି ତଳେ କହି
ଉପରେ କେହି ଠିଆ ହୋଇ
କେତେ ଯେ ପାହାଡ଼ ପର୍ବତ
ବାଟରେ ହୁଏ ଉପଗତ
କେହି ଧାବନ୍ତି ଧାଡ଼ି ହୋଇ
କେହି ବା ହସେ ମାଡ଼ିଆଇ
ଶେଷରେ ଦେଖା ହେଲେ ବୀର
ପକ୍ଷୀମାନଙ୍କ ଅଧୀଶ୍ୱର ।

## ମା' ପକ୍ଷୀ

ପର୍ବତମାଳାଙ୍କ ମଧ୍ୟରୁ ଉଠିଆସିଛି ଏକ କୃଷ୍ଣ ପର୍ବତ ଏବଂ କୃଷ୍ଣ ପର୍ବତ ମଧ୍ୟରେ ଉଠିଛି ଏକ ଅନ୍ତରୀପ । ଏହି ଅନ୍ତରୀପ ଉପରେ ସ୍ଥାନ ଗ୍ରହଣ କରିଛନ୍ତି ପକ୍ଷୀରାଜ ଜଟାୟୁ । ନୈଷ୍ଠିକ ବାଲ୍ମୀକି ଏହି ଜଟାୟୁଙ୍କୁ ଏକ ବଟବୃକ୍ଷ ଉପରେ ସ୍ଥାପନ କରି ତାଙ୍କୁ କେବଳ ବିଶାଳକାୟ ଓ ଶକ୍ତିମାନ କହି ତାଙ୍କର ଅନ୍ୟ କୌଣସି ବର୍ଣ୍ଣନା କରିନାହାନ୍ତି । କିନ୍ତୁ, କମ୍ବନ ପରବର୍ତ୍ତୀ କେତୋଟି ଦୃଶ୍ୟରେ ସୀତାଙ୍କ ପ୍ରତିରକ୍ଷାରେ ନିଜ ପ୍ରାଣବଳି ଦେବାକୁ ଯାଉଥିବା ଏ ପକ୍ଷୀରାଜଙ୍କ ବିଷୟରେ କହିବାକୁ ଯାଇ ନିଜର ସମସ୍ତ ବର୍ଣ୍ଣନାତ୍ମକ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ନିର୍ମଳ କଳାରେ ପ୍ରବୀଣ, ଜ୍ଞାନରେ ମହୀୟାନ୍, ସତ୍ୟବାନ ଓ ନିଷ୍କଳଙ୍କ, ପ୍ରଜ୍ଞାରେ ତୀକ୍ଷ୍ଣ ଜଟାୟୁ ଜଣେ ପ୍ରବୀଣ ରାଜନୀତିଙ୍କ ପରି ବହୁ ଦୂରରୁ ନିଜର କ୍ଷୁଦ୍ର ଚକ୍ଷୁ ପ୍ରସାରିତ କଲେ । ବାଲ୍ମୀକି ରାମାୟଣରେ ଜଟାୟୁ ନିଜେ ରାମ ଓ ଲକ୍ଷ୍ମଣଙ୍କୁ ସେମାନଙ୍କ ପିତାଙ୍କ ବନ୍ଧୁ ବୋଲି ନିଜର ପରିଚୟ ଦେଇଛନ୍ତି ଅଥଚ ଦଶରଥଙ୍କ କୁଶଳ ଜିଜ୍ଞାସା କରିନାହାନ୍ତି । ଅନ୍ୟ ପକ୍ଷରେ, କମ୍ବନଙ୍କ ଜଟାୟୁ ଦଶରଥଙ୍କ କୁଶଳ ପ୍ରଶ୍ନ କରି ଏକ ଶୋକ-ସଙ୍ଗୀତରେ ମନୁଷ୍ୟ ଓ ପକ୍ଷୀଙ୍କ ଅନାବିଳ ସମ୍ପର୍କ ଉପରେ ସୂଚନା ଦେଇଛନ୍ତି । ଫଳତଃ, କଳ୍ପନା ଓ ନାଟକୀୟ ଅନୁକମ୍ପା ମାଧ୍ୟମରେ କମ୍ବନ ଜଟାୟୁଙ୍କୁ ପାଠକଙ୍କ ନିକଟବର୍ତ୍ତୀ କରାଇ ସେମାନଙ୍କ ମନରେ ଦୟାଭାବର ଉଦ୍ରେକ କରିପାରିଛନ୍ତି ।

ନିଜର ବିଶାଳ ବିସ୍ତୃତ ପକ୍ଷର ଛାୟାରେ ଜଟାୟୁ ରଘୁନନ୍ଦନଙ୍କୁ ପଞ୍ଚବଟୀରେ ପହଞ୍ଚାଇଦେଲେ । ସେମାନଙ୍କୁ ଅଗସ୍ତ୍ୟ କହିଥିବା ଯାଗାର ସୂଚନା ଦେଇ ନିରୀକ୍ଷଣ

ପାଇଁ ଛାଡ଼ିଗଲେ । ନିଜର ଚିନ୍ତାକୁ ବଧୂ ଓ ଦୁଇପୁତ୍ରଙ୍କ ଉପରେ କେନ୍ଦ୍ରୀଭୂତ କରି ଜଟାୟୁ ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ପ୍ରହରୀ ଦେବାକୁ ଲାଗିଲେ । ମାନବୀୟ ଖୋଳରୁ ବାହାରି ଆସିବାର ଅଦ୍ୱିତୀୟ ସାମର୍ଥ୍ୟସମ୍ପନ୍ନ କମ୍ବାର ବର୍ତ୍ତମାନ କୋମଳ ହୃଦୟର ଗଭୀରତମ ପ୍ରଦେଶରୁ ପକ୍ଷୀର ଆଖିରେ ତିନିଜଣଙ୍କୁ ପର୍ଯ୍ୟବେକ୍ଷଣ କରିଛନ୍ତି—

ଜଟାୟୁ ଦେଖନ୍ତି ତିନିଙ୍କୁ
ଯେପରି ମାତା ପକ୍ଷୀ ଦେଖେ
ନୀଡ଼ରେ ଶିଶୁ-ଶାବକଙ୍କୁ ।

ଏହି ସାମର୍ଥ୍ୟ ମାଧ୍ୟମରେ କମ୍ବାର ଏକ କଳ୍ପିତ ଓ ପୌରାଣିକ ଚରିତ୍ରକୁ ଅତି ଜୀବନ୍ତ ଓ ଶକ୍ତିମନ୍ତ କରି ତୋଳିଛନ୍ତି ଏବଂ ମନୁଷ୍ୟ ଓ ପକ୍ଷୀଙ୍କ ମଧ୍ୟରେ ପରିଦୃଶ୍ୟ ବ୍ୟବଧାନକୁ ନିଶ୍ଚିହ୍ନ କରିପାରିଛନ୍ତି ।

## ଶୂର୍ପଣଖାଙ୍କ ଅଦ୍ଭୁତ ପ୍ରେମ

ରାମ ଓ ସୀତା ଅତୀବ ରୋମାଣ୍ଟିକ୍ ପରିବେଶ ମଧ୍ୟରେ ଆନନ୍ଦ-ପ୍ରମୋଦରେ କାଳାତିପାତ କଲାବେଳେ, ଜଣେ ଆଗନ୍ତୁକ ସେମାନଙ୍କ ଜୀବନରେ ପ୍ରବେଶ କରି ଘଟଣା ପ୍ରବାହର ମୋଡ଼ ବଦଳେଇ ଦେଇଛି । ପଞ୍ଚବଟୀ ନିକଟସ୍ଥ ଏକ ବିଶାଳ ଅରଣ୍ୟରେ ରାଜତ୍ୱ କରୁଥାଏ ଶୂର୍ପଣଖା । ଶୂର୍ପଣଖା ଥିଲା ଜଣେ ରାକ୍ଷସୀ ଏବଂ ରାବଣର ଭଗ୍ନୀ । ହିଂସ୍ର ଭାଗ୍ୟ ତାକୁ ରାମଙ୍କ ନିବାସସ୍ଥଳୀକୁ ଟାଣି ଆଣିଥିଲା । ରାକ୍ଷସଙ୍କ ବଂଶ ନିପାତ ପାଇଁ ଜନ୍ମଗ୍ରହଣ କରିଥିଲେ ରାମ ଓ କବିଙ୍କ ମତରେ ରାମଙ୍କ ଉଦ୍ଦେଶ୍ୟ ସମ୍ପୂର୍ଣ୍ଣ କରିବାରେ ଜନ୍ମଗ୍ରହଣ କରିଥିଲା ଶୂର୍ପଣଖା । ପ୍ରସଙ୍ଗକ୍ରମେ, ଏ ଦୁହିଁଙ୍କ ସାକ୍ଷାତକାର ପୁରାଣରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ରାମଙ୍କ ଉପରେ ଦୃଷ୍ଟି ପଡ଼ିବାରୁ ତାଙ୍କର ଅପୂର୍ବ ରୂପଲାବଣ୍ୟରେ ମୋହିତ ହୋଇପଡ଼ିଥିଲା ରାକ୍ଷସୀ । ତା'ର ମନେ ହେଲା ଏପରି ଏକ ଅପରୂପ ପୁରୁଷ ସେ ପୂର୍ବରୁ କେବେହେଲେ ଦେଖି ନାହିଁ । ତତ୍‌କ୍ଷଣାତ୍ ଶୂର୍ପଣଖା ରାମଙ୍କ ପ୍ରେମରେ ପାଗଳ ହୋଇ ଉଠିଲା । ଏପରି ଏକ ପୁରୁଷ କାହିଁକି ଯେ ଆମୋଦପ୍ରମୋଦରେ ନିଜକୁ ହଜେଇ ନଦେଇ ଅତୀବ ନିଷ୍ଠା ଓ କଠୋର ସାଧନାରେ କାଳାତିପାତ କରୁଛନ୍ତି, ଏହା ଚିନ୍ତା କରି ବଡ଼ ଆଚମ୍ବିତ ହେଲା ରାକ୍ଷସୀ । ନିଜକୁ ନିଜେ ପ୍ରଶ୍ନ କଲା :

ତପସ୍ୟା କରିଛ କେଉଁ ତପସ୍ୟା କେଜାଣି
ବଶୀଭୂତ କରିଅଛ ତପସ୍ୟାରେ ଜାଣି !

ବାଲ୍ମୀକିଙ୍କ ଶୂର୍ପଣଖା ଯା'ର କେଶ ଥିଲା ଲାଲ, ଉଦର ପ୍ରକାଣ୍ଡ ଓ ଯେ ଥିଲା ଭୟଙ୍କର ଭାବେ କୁତ୍ସିତ, ନିଜର ପ୍ରେମାବେଗକୁ ରୋକି ନପାରି ରାମଙ୍କ ସମ୍ମୁଖରେ

ନିଜର ଲୁଣ୍ଠିତ ରୂପରେ ହିଁ ଉପସ୍ଥିତ ହୋଇଛି; କିନ୍ତୁ କମ୍ବନଙ୍କ ଶୂର୍ପଣଖା ଥିଲା ଅତି ଚତୁରୀ ଏବଂ ରାମଙ୍କ ସମ୍ମୁଖରେ ଉପସ୍ଥିତ ହେବା ପୂର୍ବରୁ ନିଜର ସମସ୍ତ ଇନ୍ଦ୍ରଜାଲ କୌଶଳ ପ୍ରୟୋଗ କରି ଜଣେ ଅତି ଆକର୍ଷଣୀୟ ନାରୀ ରୂପ ଧାରଣ କରିଛି । ମନ୍ତ୍ରିତ ଶବ୍ଦ ଉଚ୍ଚାରଣ କରି ତତ୍‌କ୍ଷଣାତ୍ ରାକ୍ଷସୀ ଚନ୍ଦ୍ରଠୁ ଅଧିକ ସୁନ୍ଦର ଶରୀର ଓ ମୁଖ ପ୍ରାପ୍ତ କରିଛି । ଗୋଟିଏ ଅଳ୍ପ ଛନ୍ଦଯୁକ୍ତ ପଦ୍ୟରେ କମ୍ବନ ରାମଙ୍କ ସମ୍ମୁଖରେ ଏକ ଚକ୍‌ଚକ୍ ଶାଢ଼ୀ ପିନ୍ଧି ଶୂର୍ପଣଖାର ପ୍ରବେଶ ବୃତ୍ତାନ୍ତ ବର୍ଣ୍ଣନା କରିଛନ୍ତି । ଅତି କୋମଳ ଭାବରେ ଆସିଛି ଶୂର୍ପଣଖା ଓ ମୟୂରୀ ପରି ଚାଲି ଚାଲି ତଥା ନିଜର ଆବଶ୍ୟକୀୟ ଅଙ୍ଗଚାଳନା କରି ରାମଙ୍କୁ ଆକର୍ଷିତ କରିବାକୁ ଚେଷ୍ଟା କରିଛି । ତାର ଦେହର ସ୍ୱର୍ଣ୍ଣାଭ ରଙ୍ଗ ସ୍ୱର୍ଗର କଳ୍ପକ ଗଛର କୋମଳ ଓ ମୂଲ୍ୟବାନ ପଲ୍ଲବ ପରି ଦିଶୁଛି । ତାର ଲୋହିତ ଅଧରରୁ କାମୋଦ୍ଦୀପକ ମଧୁ କ୍ଷରଣ ହେଉଛି । ଅଧରର ପଶ୍ଚାତ୍ ଭାଗରେ ଝୁଲୁଅଛି ଉଜ୍ଜ୍ୱଳ ମୁକ୍ତାର ହାର । ଦ୍ରୁତଗାମୀ ମୃଗର ଆଖି ପରି ଦିଶୁଛି ତାର ଲଜୁଆ ଆଖି । ଦୁଃଖର ବିଷୟ, ମୂଳ ରଚନାରେ ପର୍ଯ୍ୟାପ୍ତ ତାର କାମୋଦ୍ଦୀପକ ଆକର୍ଷଣକୁ ଅନୁବାଦରେ ପ୍ରକାଶ କରି ହେଉନାହିଁ । କମ୍ବନଙ୍କ ମୂଳ ରଚନାରେ ଏ ରାକ୍ଷସ-ନାରୀର ସ୍ୱର୍ଗୀୟ ଚଞ୍ଚଳତା ଅଥବା ଚତୁରତା ସହ ବର୍ଣ୍ଣିତ ହୋଇଛି ଏବଂ ଏ ପଦ୍ୟରେ ପରିଦୃଶ୍ୟ ସୌନ୍ଦର୍ଯ୍ୟ ପରବର୍ତ୍ତୀ ପଦ୍ୟରେ ଶ୍ରାବ୍ୟ ହୋଇଛି । ଶୂର୍ପଣଖାର ନୁପୁରର ଝୁମ୍‌ଝୁମ୍ ଶବ୍ଦ, ତାର କଟି-ମେଖଳାରେ ବନ୍ଧା ହୋଇଥିବା ଛୋଟ ଛୋଟ ଘଣ୍ଟିର, ନିକ୍ୱଣ ସେ ପିନ୍ଧିଥିବା ହାରର ମଧୁର ଗୁଞ୍ଜନ ଏବଂ ତାର ଟ୍ୟାସଲ୍‌ରେ ଖୋସା ହୋଇଥିବା ଫୁଲର ସ୍ୱର୍ଣ୍ଣାଭ ମଧୁପଙ୍କ ଗୁଣୁଗୁଣୁ ସ୍ୱର—ଏ ସମସ୍ତ ଶବ୍ଦ ଯେମିତି କହୁଥିଲେ- 'ଏ ନାରୀ ଆସୁଛନ୍ତି !'

କମ୍ବନ ଯଦିଓ ପ୍ରେମ ଉପରେ ଅତି ଗମ୍ଭୀର ଭାବେ ଓ ସତ୍ୟର ଅନୁସରଣରେ ସୁନ୍ଦର ପଦ୍ୟ ଲେଖି ପାରନ୍ତି, କିନ୍ତୁ ତାଙ୍କର ବହୁ ପଦ୍ୟରେ ଶୂର୍ପଣଖାର ଅଦ୍ଭୁତ ପ୍ରେମକୁ ହାସ୍ୟୋଦ୍ଦୀପକ କରି ତୋଳିଛନ୍ତି । ରାମଙ୍କ ଦ୍ୱାରା ନିରାଶ ହୋଇ, ଘନୀଭୂତ ବରଫଖଣ୍ଡମାନ ଖୋଳି ନିଜର ଉତ୍ତୁଙ୍ଗ ସ୍ତନରେ ବୋଳିଛି ଶୂର୍ପଣଖା, କିନ୍ତୁ ଉତ୍ତପ୍ତ ପଥର ଉପରେ ଲହୁଣୀ ତରଳିଗଲା ପରି ଏହା ତରଳିଯାଇଛି । ପରିଶେଷରେ, ଲକ୍ଷ୍ମଣ ତାର ନାସିକା ଓ ସ୍ତନାଗ୍ର କାଟି ତାର ଔଦ୍ଧତ୍ୟପୂର୍ଣ୍ଣ ପ୍ରେମର ଶାସ୍ତି ବିଧାନ କରିଛନ୍ତି । 'ଏକ ବିରାଟ ଢୋଲକ ଶବ୍ଦରେ କାନ୍ଦି ଉଠିଛି ଶୂର୍ପଣଖା । ଯମଙ୍କ ଆଦେଶ ଅନୁଯାୟୀ ଏ ଶବ୍ଦ ହିଁ ରାକ୍ଷସ ଜାତିର ସର୍ବନାଶ ଘୋଷଣା କରିଛି ।'

ଶୂର୍ପଣଖା ଥିଲା ରାବଣର ରାଜକୀୟ ପରିବାରର ସଦସ୍ୟା । ତାର ପଶ୍ଚାତ୍-ଭାଗରେ ଥିଲା ରାଜକୀୟ ମର୍ଯ୍ୟାଦା ଏବଂ ରାକ୍ଷସ ସାମ୍ରାଜ୍ୟର ଆରକ୍ଷୀଗଣ । ଅନ୍ୟମାନଙ୍କୁ ଅତ୍ୟାଚାର କରିବାରେ ସେ ଅଭ୍ୟସ୍ତ ଥିଲା, ନିଜେ ଅତ୍ୟାଚାରିତ ହେଉ ନଥିଲା । ଜଣେ ସାଧାରଣ ଲୋକ ତାକୁ ଯେ ଲାଞ୍ଛିତ କରିବ, ଏହା ତାର

ରାଜକାର୍ଯ୍ୟ ମର୍ଯ୍ୟାଦାକୁ କ୍ଷୁର୍ଣ୍ଣ କରିଥିଲା । ରାକ୍ଷସ ରାଜ୍ୟର ସମ୍ରାଟ ରାବଣଙ୍କ ଭଗ୍ନୀ ଧୂଳିରେ ଗଡୁଥିଲାବେଳେ, ତାକୁ ଲାଞ୍ଛିତ କରିଥିବା ଅପରାଧୀ କେବଳ ଦଣ୍ଡିତ ହୋଇ ନଥିଲା ମାତ୍ର ନିଜେ ଅପରାଧ ନେଇ ଆନନ୍ଦ ପ୍ରକଟ କରୁଥିଲା । ରାକ୍ଷସର ନିର୍ଦ୍ଦେଶରେ ଅରଣ୍ୟ ଜଗୁଥିବା ଖର ଓ ଦୂଷଣ ଏ ଅପମାନ ବିଷୟ ଜାଣିପାରି ରାମଙ୍କ ସହ ଯୁଦ୍ଧ କରିଥିଲେ କିନ୍ତୁ ତାଙ୍କ ଦ୍ୱାରା ଧ୍ୱଂସ ହୋଇ ଯାଇଥିଲେ ।

**ଲଙ୍କାଗଡ଼**

ସେମାନଙ୍କ (ଖର ଓ ଦୂଷଣ) ମୃତ୍ୟୁ ପରେ ଶୂର୍ପଣଖା ଲଙ୍କାଗଡ଼ ଅଭିମୁଖେ ଯାତ୍ରା କଲା । ଠିକ ଏହି ସମୟରେ କମ୍ବନ ଆମକୁ ରାବଣ ସହିତ ପରିଚୟ କରେଇ ତାର ସମସ୍ତ ଆଡ଼ମ୍ବର ଓ ଐଶ୍ୱର୍ଯ୍ୟ ଉପରେ ଆଲୋକପାତ କରିଛନ୍ତି । ରାବଣ ଯେ କେବଳ ଅନ୍ଧ ପାପକୁ ପ୍ରତିନିଧିତ୍ୱ କରୁଥିବା ଜଣେ ପ୍ରକାଣ୍ଡ ରାକ୍ଷସ ଥିଲା ତାହା ନୁହେଁ, ସେ ଥିଲା ଜଣେ ଉଦାର, ସାହସୀ, ଆଧ୍ୟାତ୍ମିକ ଶକ୍ତିସମ୍ପନ୍ନ, ଦୟାଶୀଳ ଓ ମହାନ ସଂସ୍କୃତି-ସଚେତନ ବ୍ୟକ୍ତିତ୍ୱ । ଅନ୍ଧ କାମଲିପ୍ସା ଥିଲା ତାର ଏକମାତ୍ର ଦୁର୍ବଳତା— ଏହା ତାର ବ୍ୟକ୍ତିତ୍ୱକୁ କଳୁଷିତ କରିବା ସଙ୍ଗେ ସଙ୍ଗେ ତାର ଅଧଃପତନ ଆଣି ଦେଇଥିଲା । ତାର ରାଜସଭାରେ ଶକ୍ତିମନ୍ତ ରାଜାମାନେ ତାର ଦର୍ଶନ ପାଇଁ ଶିର ଉପରେ ହାତ ଯୋଡ଼ି ତାର ଚତୁଃପାର୍ଶ୍ୱରେ ସମକେନ୍ଦ୍ରରେ ଘୂରୁଥିଲେ । କେଉଁଠି ଓ କେତେବେଳେ ଯେ ସମ୍ରାଟ ତାଙ୍କ ଉପରେ ନଜର ଦେବେ, ତା' ସେମାନେ ଜାଣି ପାରୁନଥିଲେ । ସ୍ୱର୍ଗର ଗାୟକ ତୁମ୍ବୁରୁ ସୁନ୍ଦର ସଙ୍ଗୀତରେ ରାବଣର ବାହୁବଳ ସୌନ୍ଦର୍ଯ୍ୟର ପ୍ରଶଂସା ଗାନ କରୁଥିଲେ । ପ୍ରାଚୀନ କ୍ଲାସିକାଲ୍, ପରମ୍ପରାର ଶୁଦ୍ଧତା ଓ ମହାନତା ରକ୍ଷାକାରି ନାରଦ ତାର କର୍ଣ୍ଣରେ ବୀଣା ବାଦନ କରୁଥିଲେ । ରାବଣର ରାଜସଭାରେ ଶୂର୍ପଣଖା ସମୁଦ୍ରକୁ ମନ୍ଥନ କରି ପାରୁଥିବା ପ୍ରଚଣ୍ଡ ଘୂର୍ଣ୍ଣିବାତ୍ୟା ବେଗରେ ପ୍ରବେଶ କଲାମାତ୍ରେ ଏସବୁ ସଙ୍ଗୀତ ବନ୍ଦ ହୋଇଗଲା । ରାବଣ ନିଜ ଭଗ୍ନୀର ଏ କ୍ଷତାକ୍ତ ଅବସ୍ଥା ଦେଖି ଅତି ଉଚ୍ଚ ସ୍ୱରରେ ପ୍ରଶ୍ନ କଲା, 'କାହାର ଏ କାର୍ଯ୍ୟ ?' ଅପରାଧୀଙ୍କ ସହ ଗଭୀର ପ୍ରେମଜ୍ୱାଳାରେ ଜ୍ୱଳମାନ ଶୂର୍ପଣଖା ଉତ୍ତର ଦେଲା, 'ସେମାନେ ସବୁ ମଣିଷ ଯେଉଁମାନେ ଖଣ୍ଡାରେ ମୋର ନାକ କାଟି ଦେଇଛନ୍ତି । ସେମାନେ ଦିଶୁଛନ୍ତି ଯେପରି ପ୍ରେମର ଈଶ୍ୱର । ଏଇ ଗୋଟିଏ ମାତ୍ର ପୃଥିବୀରେ କ'ଣ ଦୁଇଜଣ ମଦନ ଏକସହ ଅବସ୍ଥାନ କରି ପାରନ୍ତି ?' ଛେଦନକାରୀଙ୍କ ପ୍ରତି ଶୂର୍ପଣଖାର ପ୍ରଶଂସାପୂର୍ଣ୍ଣ ଶବ୍ଦରେ କୌଣସି ତିକ୍ତତା ନଥିଲା, ଏଣୁ ରାବଣ ଏଥିରେ କୌଣସି ଚକ୍ରାନ୍ତ ଥିବାର ସନ୍ଦେହରୁ ମୁକ୍ତ ନଥିଲା । କିନ୍ତୁ ଶୂର୍ପଣଖା ସୀତାଙ୍କର ଏକ ମୋହିତ ରୂପ ବର୍ଣ୍ଣନା କରି ରାବଣର ସନ୍ଦେହ ଦୂର କରିଥିଲା । ରାବଣର କାମଲାଳସାକୁ ଉଦ୍ରିକ୍ତ କରି ତା' ଦ୍ୱାରା ସୀତାଙ୍କୁ ଅପହରଣ କରିନେଲେ ରାମ ଓ ଲକ୍ଷ୍ମଣଙ୍କୁ ନିର୍ବିଘ୍ନରେ ପାଇବା ଥିଲା ତାର

ମନ୍ଦ ଉଦ୍ଦେଶ୍ୟ । ସୀତାଙ୍କ ସୌନ୍ଦର୍ଯ୍ୟର ଏପରି ବିସ୍ମୟାପନ୍ନ ବର୍ଣ୍ଣନା ଶୁଣି ରାବଣର ହୃଦୟ କାମାଗ୍ନିରେ ଜଳି ଉଠିଲା । ପ୍ରେମର ପ୍ରବଳ ଉତ୍ତେଜନା ଭିତରେ ସାରା ରାତି ଉଜାଗର ରହି କିପରି ସୀତାଙ୍କୁ ପାଇ ପାରିବ, ସେ ବିଷୟରେ ଚିନ୍ତା କରିବାକୁ ଲାଗିଲା । ରାମଙ୍କ ଉପରେ ପ୍ରତିଶୋଧ ନେବା ପାଇଁ ସେ ମାମୁଁ ମାରୀଚକୁ ଡକେଇ ପଠେଇଲା । ସୀତାଙ୍କୁ ଅପହରଣ କରିବା ଥିଲା ତାର ଉଦ୍ଦେଶ୍ୟ । ଏଣୁ ସୀତାଙ୍କୁ ରାମଙ୍କଠାରୁ ବିଚ୍ଛିନ୍ନ କରିବା ପାଇଁ ସେ ମାରୀଚକୁ ତାର ଇଚ୍ଛା ବିରୁଦ୍ଧରେ ନିର୍ଦ୍ଦେଶ ଦେଲା । ମାରୀଚ ସ୍ୱର୍ଣ୍ଣମୃଗ ରୂପ ଗ୍ରହଣ କଲା ଏବଂ ତାର ଚକ୍ଷୁର ସ୍ୱର୍ଣ୍ଣାଭ ଜ୍ୟୋତିରେ ସାରା ଆକାଶ ଓ ପୃଥିବୀ ଆଲୋକିତ ହୋଇ ଉଠିଲା । ମାରୀଚ ପଞ୍ଚବଟୀ ଅରଣ୍ୟରେ ପହଞ୍ଚିଲା ଏବଂ ସୀତାଙ୍କୁ ତାଙ୍କ ଆଶ୍ରମର ବାହାରକୁ ଆସିବାର ଦେଖିଲା ।

କ୍ଷୀଣ କଟି ଦୋହଲାଇ
କୋମଳ ପାଦରେ ଚାଲି
ବୁଲୁଥିଲେ ରାମରମଣୀ
ହାତରେ ତୋଳୁଥିଲେ ଫୁଲ
ହାତ ଦିଶୁଥିଲା ସତେ ଅବା
ଅତୋଳା-ଫୁଲ ।

ଏ ପଦ୍ୟର ମୂଳ ରଚନା ପାଠକଲେ ଜଣାଯିବ କିପରି କମ୍ବନ ସୀତାଙ୍କ ସୁନ୍ଦର ଚଳନଭଙ୍ଗୀ ମଧ୍ୟରେ ନିଜର ଆତ୍ମାକୁ ପ୍ରବେଶ କରାଇ, ତା' ମଧ୍ୟରୁ ଉର୍ଣ୍ଣନାଭର ସୂକ୍ଷ୍ମ ତନ୍ତୁ ଭଳି ସୂକ୍ଷ୍ମ କବିତା ସୃଷ୍ଟି କରିପାରିଛନ୍ତି । ଏହି ଦୃଶ୍ୟରେ, ରାମଙ୍କୁ ସୁମିଷ୍ଟ ସ୍ୱରରେ ଲକ୍ଷ୍ମଣଙ୍କ ଦ୍ୱାରା ସ୍ୱର୍ଣ୍ଣମୃଗକୁ ନ ଅଣେଇ ନିଜ ହାତରେ ଧରି ଆଣିବାକୁ ଅନୁରୋଧ କରିଛନ୍ତି ସୀତା । ଏ ପଦ୍ୟର ଶବ୍ଦ-ପଙ୍କ୍ତିରେ ଏକପ୍ରକାର କୋମଳ ଆକର୍ଷଣ ଓ ନାରୀ-ଭାବ ରହିଛି ଏବଂ ବ୍ୟଞ୍ଜନବର୍ଣ୍ଣ ଅପେକ୍ଷା ସ୍ୱରବର୍ଣ୍ଣର ପ୍ରାବଲ୍ୟ ରହିଛି । ମୃଗ ପଛରେ ରାମ ଅନୁଧାବନ କଲାବେଳେ ମୃଗ ତାର କାନ ନୁଆଁଇ ଗୋଡ଼ପାଦକୁ ତାର ଗ୍ରୀବା ପାଖରେ ଜାକି ଖୁବ୍ ଜୋରରେ ଦୌଡ଼ିବାକୁ ଆରମ୍ଭ କରିଛି । ପବନ ଓ ମନଠାରୁ ଅଧିକ ବେଗରେ ଗତି କରୁଥିବା ମୃଗକୁ ଦେଖିଲେ ମନେ ହେଉଥିଲା ସତେ ଯେପରି ବେଗ ଉପରେ ବେଗ ହିଁ ଲଦି ହେଉଥିଲା । ଜଙ୍ଗଲ ଉପରେ ଆରୋହଣ କରି ସେଠୁ ଗୋଟିଏ ବଉଦ ଭେଳା ଭିତରକୁ ଲମ୍ଫଦେଲା ମୃଗ । ରାମ ଯେଉଁଠି ଅବଶ ହୋଇ ରହି ଯାଉଥିଲେ ମୃଗଟି ରାମଙ୍କ ନିକଟକୁ ଆସି ଅତି ସ୍ଥିର ଭାବେ ଠିଆ ହେବାର ଛଳନାକରି ପରେ ବହୁ ଦୂରକୁ ଦୂରକୁ ଚାଲିଯାଉଥିଲା । ଏହାର ନିରାଶପୂର୍ଣ୍ଣ ଚଳନ ଭଙ୍ଗୀ ପୁଷ୍ପଖଚିତ ବେଣ୍ୟାଙ୍କର ଦୋଳାୟମାନ ସ୍ନେହ ପରି ମନେ ହେଉଥିଲା । ପାଠକଗଣ ମୃଗର ଅଙ୍ଗ ଚାଳନାରେ ନିମଗ୍ନ ଥିଲାବେଳେ, କମ୍ବନ ଏକ ଯଥାର୍ଥ କାନ୍ତ

ପ୍ରଚଣ୍ଡ ଉପମା ବ୍ୟବହାର କରି ତାଙ୍କୁ ଅନ୍ୟ ଏକ ବାସ୍ତବ ଜଗତର ବାସ୍ତବତା ଆଡ଼କୁ ଟାଣି ନେଇଛନ୍ତି । ଏଠାରେ ପାଠକମାନେ ଗୋଟିଏ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ସ୍ଥାନାନ୍ତରିତ ହେଉଥିବା ଦୁଃଖୀ ଅଥଚ 'ପ୍ରସନ୍ନ ଚିତ୍ତ' ଝିଅଙ୍କର ମାନସିକ ଅବସ୍ଥା ଦେଖି ପାରୁଥିଲେ । ପରିଶେଷରେ ଗୋଟିଏ ଦୀର୍ଘ ପକ୍ଷ ପରି ଦିଶୁଥିବା ତୀରକୁ ମୃଗ ଉଦ୍ଦେଶ୍ୟରେ ଉତ୍କ୍ଷେପଣ କଲେ ରାମ । ମୃଗଟି ରାମଙ୍କ କଣ୍ଠସ୍ୱର ଅନୁକରଣ କରି ସାହାଯ୍ୟ ପାଇଁ ଚିତ୍କାର କରିଉଠିଲା ଓ ମରି ତଳେ ପଡ଼ିଗଲା । ରାମ ବର୍ତ୍ତମାନ ଅନୁଭବ କଲେ ଯେ, ମୃଗ ହେଉଛି କୌଣସି ଶତ୍ରୁର ଷଡ଼ଯନ୍ତ୍ରର ଅଂଶବିଶେଷ । ଏ ବିଷୟରେ ମଧ୍ୟ ଲକ୍ଷ୍ମଣ ତାଙ୍କୁ ପୂର୍ବରୁ ସତର୍କ କରି ଦେଇଥିଲେ ।

### ଅପହରଣ

ମିଥ୍ୟାପୂର୍ଣ୍ଣ କରୁଣ ସ୍ୱର ଶୁଣି ସୀତା ପ୍ରତାରିତ ହୋଇଗଲେ । ତାଙ୍କର ମନେ ହେଲା ରାମ ବିପଦରେ ପଡ଼ିଛନ୍ତି । ରାମଙ୍କୁ ବିପଦରୁ ଉଦ୍ଧାର କରିବା ପାଇଁ ସେ ଲକ୍ଷ୍ମଣଙ୍କୁ ତାଙ୍କର ଅନିଚ୍ଛା ସତ୍ତ୍ୱେ ବାଧ୍ୟ କରିଛନ୍ତି । ରାମ ଓ ଲକ୍ଷ୍ମଣଙ୍କ ଅନୁପସ୍ଥିତିରେ ରାବଣ ବୃଦ୍ଧ ଓ ଦୁର୍ବଳ ସନ୍ନ୍ୟାସୀ ବେଶରେ ଆସି ସୀତାଙ୍କୁ ସେ ଠିଆ ହୋଇଥିବା ଭୂମି ସହ ଉଠାଇ ନେଇଛନ୍ତି । ସୀତାଙ୍କୁ ରଥରେ ବସାଇ ଆକାଶ ମାର୍ଗକୁ ଉଠିଛି । ସୀତାଙ୍କ ବିଳାପ ଧ୍ୱନି ଜଟାୟୁଙ୍କ କାନରେ ବାଜିଛି । ଉଭୟ ପକ୍ଷୀ ଓ ରାକ୍ଷସଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ହୋଇଛି । ଯୁଦ୍ଧରେ ରାବଣ ଜଟାୟୁଙ୍କ ଉଭୟ ପକ୍ଷକୁ ଛେଦନ କରିଦେଇଛି ଓ ଜଟାୟୁ ଅଚେତ ହୋଇ ଭୂମିରେ ପଡ଼ିଛନ୍ତି । ଏହାପରେ ସୀତାଙ୍କୁ ନେଇ ଦ୍ରୁତ ବେଗରେ ଲଙ୍କାରେ ପହଞ୍ଚିଛି । ରାବଣ ସୀତାଙ୍କ ପବିତ୍ର ଦେହକୁ ସ୍ପର୍ଶ କରିବାକୁ ଭୟ କରି ତାଙ୍କୁ ଅଶୋକ ବଣର ରାକ୍ଷସୀମାନଙ୍କ ଘେରରେ ବନ୍ଦୀ କରି ରଖିଛନ୍ତି । କବିଙ୍କ ଭାଷାରେ—

> କୃଷ୍ଣକାୟ ଶ୍ୟାମକାୟା ରାକ୍ଷସୀଙ୍କ ମଧ୍ୟେ
> ଘନକୃଷ୍ଣ ମେଘ ଖଣ୍ଡ ଭେଦୀ
> ବିଦ୍ୟୁତ୍‌ସମା ଶୋଭୁଥିଲେ ସୀତା ।

ଇତ୍ୟବସରରେ ରାମଙ୍କ ମନ ପୂର୍ବସୂଚନା ଦ୍ୱାରା ଆଶଙ୍କାରେ ଭରିଯାଇଛି ଏବଂ ସେ ଆଶ୍ରମକୁ ଫେରି ଆସି ସୀତାଙ୍କୁ ନ ଦେଖି ଆଶଙ୍କିତ ହୋଇ ପଡ଼ିଛନ୍ତି । ରାମ ଥିଲେ 'ଠିକ୍ ଆତ୍ମା ସଦୃଶ, ଯେ ଶରୀରରୁ ବିଚ୍ଛିନ୍ନ ହୋଇ ପୁଣି ଶରୀରକୁ ଖୋଜୁଥିଲେ ଏବଂ ଦେଖିଲେ ଯେ ଏହା ହଜିଯାଇଛି ।' କିଂକର୍ତ୍ତବ୍ୟବିମୂଢ଼ ହୋଇ ଠିଆହୋଇ

ରହିଲେ ରାମ— ତାଙ୍କ କାନ୍ଧରେ ଝୁଲୁଥିଲା ଶକ୍ତିମାନ ଧନୁ ଓ ସାୟକ ସାଗର ! ଲକ୍ଷ୍ମଣ ତାଙ୍କୁ ରଥର ଚକ୍ର ଦେଖେଇଦେଲେ ଏବଂ ଉଭୟେ ରଥର ପଥକୁ ଦୁଃଖରେ ଅନୁସରଣ କଲେ । ଅନତି ଦୂରରେ ରାମ ଏକ ଭୟାନକ ଦୃଶ୍ୟ ଦେଖିବାକୁ ପାଇଲେ ଏବଂ ଦ୍ରୁତଗତିରେ ସେଠି ପହଞ୍ଚି ଜଟାୟୁଙ୍କୁ ଏକ ରକ୍ତ ସ୍ରୋତରେ ଅଚେତ ଅବସ୍ଥାରେ ପଡ଼ିଥିବାର ଆବିଷ୍କାର କଲେ । ରାମଙ୍କ ଚକ୍ଷୁରୁ ଲୁହର ପ୍ରବଳ ସ୍ରୋତ ବାହାରି ଆସିଲା । ଜଟାୟୁଙ୍କ ପବିତ୍ର ଶରୀର ଉପରେ ପଡ଼ି ରାମ ଚେତା ହରେଇ ବସିଲେ । ନିକଟସ୍ଥ ଏକ ଝରଣାରୁ ଲକ୍ଷ୍ମଣ ତାଙ୍କ ଅଞ୍ଜୁଳରେ କିଛି 'ମେଘ-ଚୁମ୍ବିତ' ଜଳ ଆଣି ରାମଙ୍କ ମୁହଁରେ ସେଚନ କଲେ । ସଂଜ୍ଞା ଫେରି ଆସିଲାରୁ ରାମ ଜଟାୟୁଙ୍କ ଦୁର୍ଭାଗ୍ୟ ଉପରେ ବିଳାପ କରିବାକୁ ଲାଗିଲେ । ଧୀରେ ଧୀରେ ପକ୍ଷୀରାଜ ଜଟାୟୁଙ୍କ ସଂଜ୍ଞା ଫେରି ଆସିଲା ଏବଂ ତାଙ୍କର ଅନୁଭବ ହେଲା ଯେ, ତାଙ୍କର ସମସ୍ତ କଳଙ୍କ ଧୋଇ ହୋଇଯାଇଛି ଓ ସେ 'ତାଙ୍କର ଦୁଇ ବିଚ୍ଛିନ୍ନ ଡେଣା ସହ ସାତଟିଯାକ ପୃଥିବୀକୁ ଫେରି ପାଇଛନ୍ତି ।' ଏହା ଚିନ୍ତା କରି ଅତି ପ୍ରସନ୍ନ ହେଲେ ଜଟାୟୁ । ଜଟାୟୁ ଯେଉଁ ଚଞ୍ଚୁରେ ରାବଣର ମୁକୁଟ ଟିକିଟିକି କରି କାଟି ପକାଇଥିଲେ, ସେହି ଚଞ୍ଚୁରେ ସେ ରାମ ଓ ଲକ୍ଷ୍ମଣଙ୍କୁ ବାରମ୍ବାର ଚୁମ୍ବନ କଲେ ।

ରାବଣ ଯେଉଁଭଳି ଭାବେ ସୀତାଙ୍କୁ ଅପହରଣ କରିନେଲା, ସେ ବିଷୟରେ ବର୍ଣ୍ଣନା କରିବାକୁ ସଙ୍କୋଚ ବୋଧକଲେ ଜଟାୟୁ । ପରେ ବହୁ ସଙ୍କୋଚ ସତ୍ତ୍ୱେ ସାହସ ସଞ୍ଚୟ କରି, ପରୋକ୍ଷ ଭାବେ ସୀତାଙ୍କ ଅପହରଣର ସୂଚନା ଦେଲେ ଏବଂ ରାକ୍ଷସମାନଙ୍କ ମୂଳୋତ୍ପାଟନ ପାଇଁ ରାମଙ୍କୁ ଅନୁରୋଧ କଲେ । ଏହା କହିଲାବେଳେ ଜଟାୟୁ ସ୍ପଷ୍ଟ ଉଚ୍ଚାରଣ କରିପାରୁ ନଥିଲେ, ତଥାପି ରାମ ବୁଝିନେଲେ ଯେ, କୌଣସି ରାକ୍ଷସ ସୀତାଙ୍କୁ ଅପହରଣ କରିନେଇଛି ଏବଂ ଜଟାୟୁ ସୀତାଙ୍କୁ ଉଦ୍ଧାର କରିବାକୁ ଗଲାବେଳେ, ରାକ୍ଷସ ତାଙ୍କର ପକ୍ଷ କାଟିଦେଇଛି । କ୍ରୋଧାନଳରେ ଜଳି ଉଠିଛନ୍ତି ରାମ ଏବଂ ମାରିବାକୁ ପ୍ରସ୍ତୁତ ଦେବତାମାନଙ୍କ ସହ ସମସ୍ତ ପୃଥିବୀକୁ ଧ୍ୱଂସ କରିଦେବାକୁ କହୁଛନ୍ତି । ରାମଙ୍କ ମନରେ ଏପରି ଉତ୍ତେଜନାପୂର୍ଣ୍ଣ ଅବସ୍ଥା ଦେଖି ତାଙ୍କର ଅନିୟନ୍ତ୍ରିତ କ୍ରୋଧର ଉପଶମ ପାଇଁ ଅସ୍ତ୍ରୋପଚାର କରିବାକୁ ଆଗେଇ ଯାଇଛନ୍ତି ଜଟାୟୁ । ସେ ଜାଣିଥିଲେ ଯେ ଦଂଶସମ୍ପୂର୍ଣ୍ଣ ଶବ୍ଦ ରାମଙ୍କ ହୃଦୟକୁ ଆଘାତ ଦେବ, ତଥାପି ବାଞ୍ଛିତ ଫଳ ପାଇଁ ସେ ଏପରି ଶବ୍ଦ ପ୍ରୟୋଗ ପାଇଁ ବାଧ୍ୟ ହୋଇଛନ୍ତି । ପ୍ରଥମେ ସେ ରାମଙ୍କୁ ସୀତାଙ୍କୁ ଛାଡ଼ି ସ୍ୱର୍ଣ୍ଣମୃଗ ପଛରେ ଦୌଡ଼ି ନିଜ ପରିବାରକୁ କଳଙ୍କିତ କରିଥିବାରୁ ତାଙ୍କୁ ନିନ୍ଦା କଲେ । 'ଦୋଷ ଆପଣଙ୍କର, ପୃଥିବୀର ନୁହେଁ', କହିଲେ ଜଟାୟୁ । ଜଟାୟୁଙ୍କର ଏ ଶବ୍ଦ ରାମଙ୍କୁ ସ୍ପର୍ଶ କରିଛି ଏବଂ ତାଙ୍କର କ୍ରୋଧ ଶାନ୍ତ ହୋଇଯାଇଛି । ରାମ କହିଲେ, 'ଆପଣ ମୋତେ ଦୟାକରି ଏ ରାକ୍ଷସ କେଉଁ ଦିଗକୁ ଯାଇଛି କୁହନ୍ତୁ ।'

ରାମଙ୍କର ଏ ଶବ୍ଦ ଉଚ୍ଚାରିତ ହୋଇଛି କି ନାହିଁ, ପକ୍ଷୀରାଜଙ୍କ ଶିର ଘୂରିବାକୁ ଲାଗିଛି, ତାଙ୍କ ପାଟିରୁ ଶବ୍ଦ ସ୍ଫୁରଣ ହୋଇନାହିଁ ଏବଂ ସେ ଅତୀବ ଅବସନ୍ନ ଅନୁଭବ କରିଛନ୍ତି । ଏହାପରେ ତାଙ୍କର ପ୍ରାଣବାୟୁ ଉଡ଼ିଯାଇଛି ।

ବାଲ୍ମୀକିଙ୍କ ଜଟାୟୁ ଯଦିଓ ଅପହରଣକାରୀଙ୍କ ନାମ ପ୍ରକାଶ କରିଛନ୍ତି କିନ୍ତୁ କମ୍ବନଙ୍କ ଜଟାୟୁ ତାଙ୍କର ପ୍ରାଣତ୍ୟାଗ କଲା ପୂର୍ବରୁ ରାକ୍ଷସର ପରିଚୟ ଦେଇପାରି ନାହାନ୍ତି, ଯାହା ପୁରାଣରେ ଏକ ନାଟକୀୟ ଉତ୍କଣ୍ଠା ସୃଷ୍ଟି କରିଛି । ଏହା ବ୍ୟତୀତ, ବାଲ୍ମୀକିଙ୍କ ଜଟାୟୁଙ୍କୁ ରକ୍ତ ସ୍ରୋତରେ ଆବିଷ୍କାର କରି ରାମ ନରମାଂସଭୋଜୀ ପକ୍ଷୀଟି ସୀତାଙ୍କୁ ଭକ୍ଷଣ କରିବାର ସନ୍ଦେହ କରିଛନ୍ତି ଏବଂ ତାଙ୍କୁ ତୀରରେ ମାରିଦେବାକୁ ଉଦ୍ୟତ ହୋଇଛନ୍ତି । ଏପରି ସଙ୍କଟରେ ବାଲ୍ମୀକିଙ୍କ ଜଟାୟୁ ତାଙ୍କୁ ନ ମାରିବା ପାଇଁ ରାମଙ୍କୁ ଅନୁରୋଧ କରି ପରେ ସେ କିପରି ସୀତାଙ୍କ ଉଦ୍ଧାର ପାଇଁ ଗଲାବେଳେ ରାବଣଦ୍ୱାରା କ୍ଷତାକ୍ତ ହୋଇଛନ୍ତି ତାହା ବର୍ଣ୍ଣନା କରିଛନ୍ତି । ପକ୍ଷାନ୍ତରେ କମ୍ବନଙ୍କ ରାମ ଜଟାୟୁ ପ୍ରତି ଅଶେଷ ପ୍ରୀତି ବ୍ୟକ୍ତ କରିଛନ୍ତି ଏବଂ ତାଙ୍କଠାରେ ନିଜ ପିତାଙ୍କ ସାଦୃଶ୍ୟ ଦେଖି ପାରିଛନ୍ତି । ବାଲ୍ମୀକିଙ୍କ ରାମ ପରିବ୍ୟକ୍ତ କରିଥିବା ସନ୍ଦେହଦ୍ୱାରା ତିଳେ ମାତ୍ର ଆକ୍ରାନ୍ତ ହୋଇନି ଉଭୟଙ୍କ ସୁସମ୍ପର୍କ । ଅତୀବ ନାଟକୀୟ ଓ ମାନବିକ ବର୍ଣ୍ଣନା ଦ୍ୱାରା କମ୍ବନ ଜଟାୟୁଙ୍କୁ ଏକ ଅବିସ୍ମରଣୀୟ ଚରିତ୍ର ଭାବେ ଉପସ୍ଥାପନା କରିଛନ୍ତି ।



# କିଷ୍କିନ୍ଧ୍ୟା କାଣ୍ଡ

ଦଶରଥଙ୍କ ମୃତ୍ୟୁ ପରେ ତାଙ୍କ ଶୂନ୍ୟସ୍ଥାନ ପୂର୍ଣ୍ଣ କରିଥିବା ଜଟାୟୁଙ୍କ ଶେଷକୃତ୍ୟ ସମାପନ କରି ରାମ ଓ ଲକ୍ଷ୍ମଣ ସୀତାଙ୍କ ଅନ୍ୱେଷଣରେ ଦୂରଦୂରାନ୍ତକୁ ଗମନ କଲେ । ପରିଶେଷରେ, ସେମାନେ କିଷ୍କିନ୍ଧ୍ୟାର ଜଙ୍ଗଲୀ ଅଞ୍ଚଳରେ ପହଞ୍ଚିଲେ । ସେଠାରେ ଦୁହିଁଙ୍କୁ ଅତି ଆଦରରେ ଅଭ୍ୟର୍ଥନା କଲେ ହନୁମାନ୍ । ଉଭୟଙ୍କ ଲାବଣ୍ୟରେ ହନୁମାନ୍ ମୁଗ୍ଧ ହୋଇ ସେମାନଙ୍କୁ ସ୍ୱର୍ଗର ପରିଦର୍ଶକ ବୋଲି ପ୍ରଥମେ ଭାବିଥିଲେ । ଉଭୟଙ୍କ ଦ୍ୱାରା ଏତେ ବେଶି ମୋହିତ ହୋଇପଡ଼ିଲେ ଯେ, ତାଙ୍କର ଉପଲବ୍ଧିର ସମସ୍ତ ଦ୍ୱାରଦେଶ ପବିତ୍ର ହୋଇଯାଇଥିଲା ଏବଂ ପୃଥିବୀର ସମସ୍ତ ପଦାର୍ଥ ଏକ ନୂତନ ମୂଲ୍ୟବୋଧ ଓ ଲାବଣ୍ୟରେ ବିକଶିତ ହୋଇ ଉଠିଲା । ସେମାନଙ୍କ ପାଦସ୍ପର୍ଶରେ ଜ୍ୱଳମାନ ଉପଳଖଣ୍ଡ କୋମଳତାରେ ଭରିଗଲା ଏବଂ ସେଗୁଡ଼ିକ ମଧୁପୂର୍ଣ୍ଣ ପୁଷ୍ପରେ ପରିଣତ ହେବାର ଜଣାଗଲା । ସେମାନେ ଯେଉଁ ଦିଗକୁ ଗଲେ, ସମସ୍ତ ପଦାର୍ଥ ଗଛବୃକ୍ଷ ସମସ୍ତେ ତାଙ୍କୁ ସମ୍ମାନ ପୂର୍ବକ ଶିର ଅବନତ କରି ପ୍ରଣିପାତ ଜ୍ଞାପନ କଲେ । ହନୁମାନ ଉଚ୍ଚ ସ୍ୱରରେ କହିଲେ; 'ଏମାନେ କ'ଣ ପୁଣ୍ୟର ଈଶ୍ୱର !'

ହନୁମାନଙ୍କ ଉଚ୍ଚାରିତ ଶବ୍ଦରୁ ରାମ ହନୁମାନଙ୍କ ପବିତ୍ରତମ ବ୍ୟକ୍ତିତ୍ୱ ବିଷୟରେ ଜାଣିବାକୁ ପାଇଲେ । ଅପୂର୍ବ ଶକ୍ତି, ମସ୍ତିଷ୍କର ପୂର୍ଣ୍ଣତ୍ୱ, ଜ୍ଞାନ, ଦୃଢ଼ତା ଏବଂ ବୁଦ୍ଧିରେ ପରିପୂର୍ଣ୍ଣ ଥିଲା ତାଙ୍କର ବ୍ୟକ୍ତିତ୍ୱ । 'ଈଶ୍ୱରଙ୍କୁ ତାଙ୍କ ଏକାକୀତ୍ୱରୁ ମୁକ୍ତ କରିବା ଲାଗି' ପୃଥିବୀରେ ହନୁମାନ ଅବତୀର୍ଣ୍ଣ ହୋଇଥିଲେ ବୋଲି କମ୍ବନ ବର୍ଣ୍ଣନା କରିଛନ୍ତି । ରାମ ଲକ୍ଷ୍ମଣଙ୍କୁ କହିଲେ, 'ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଥିବା ଏ ବାନରର ରୂପରେ ଯେଉଁ ଉତ୍କର୍ଷ ପରିଲକ୍ଷିତ ହେଉଛି, ତାକୁ ନାଁ କବିତା, ନାଁ ଶବ୍ଦର ଜାଲରେ ବାନ୍ଧି ହେବ, ନାଁ 'ଏକାନ୍ତ ଜ୍ଞାନ' (Unitive Wisdom) ର ରହସ୍ୟାତ୍ମକ ଜାଲରେ ତାକୁ ଧରି ହେବ ।'

ସ୍ୱୀୟ ପ୍ରଭୁ ବାନରରାଜ ସୁଗ୍ରୀବଙ୍କ ନିକଟକୁ ଯାଇ ହନୁମାନ ରାମଙ୍କ ସମ୍ଭ୍ରାନ୍ତ ବଂଶାବଳୀ ବିଷୟରେ ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ତାଙ୍କର ମହାନ ତ୍ୟାଗ ଓ ତାଙ୍କର ଅଧୁନାତନ ସଙ୍କଟାବସ୍ଥା ବିଷୟରେ ତାଙ୍କୁ ଅବଗତ କରାଇଛନ୍ତି । ହନୁମାନଙ୍କ ବର୍ଣ୍ଣନାରେ ଅଭିଭୂତ ହୋଇ ସୁଗ୍ରୀବ ତତ୍‌କ୍ଷଣାତ୍ ରାମଙ୍କୁ ସାକ୍ଷାତ କରିବାର ଇଚ୍ଛା

ପ୍ରକଟ କରିଛନ୍ତି । ଜଙ୍ଗଲର ଅଙ୍କାବଙ୍କା ରାସ୍ତାରେ ଯାଇ କୌଣସି ଏକ ବାଙ୍କ ଅତିକ୍ରମ କଲାପରେ ଉଭୟେ ରାମଙ୍କୁ ନିକଟରେ ଦେଖିବାକୁ ପାଇଲେ । ରାମଙ୍କୁ ଦେଖିବା ମାତ୍ରେ ସୁଗ୍ରୀବ ଚକିତ ହୋଇ ରହିଗଲେ । ଦୀର୍ଘ ସମୟ ଧରି ରାମଙ୍କୁ ଚାହିଁ ରହି କହିଲେ, 'ଦେବାଧିରାଜ ମଣିଷଙ୍କ ରୂପ ଗ୍ରହଣ କରି ପଦାର୍ପଣ କରିଛନ୍ତି ଏବଂ ମଣିଷ ରୂପ ଗ୍ରହଣ କରି ଦେବତାଙ୍କ ଉପରେ ମଣିଷଙ୍କ ବିଜୟ ପ୍ରତିପାଦିତ କରିଛନ୍ତି ।'

ସୁଗ୍ରୀବଙ୍କୁ ନିଜର ବନ୍ଧୁ ଏବଂ ମିତ୍ରଭାବେ ଗ୍ରହଣ କରିଛନ୍ତି ରାମ । ସୁଗ୍ରୀବଙ୍କ ଅଗ୍ରଜ ବାଲୀ ଅନୁଜଙ୍କ ସ୍ତ୍ରୀଙ୍କୁ ଅଟକ ରଖିବା ତଥା ତାଙ୍କୁ ହଇରାଣ ହରକତ କରୁଥିବା ଶୁଣି ବାଲୀକୁ ବଧ କରିବାର ଆଶ୍ୱାସନା ଦେଇଛନ୍ତି ରାମ ।

### ଏକକ ଯୁଦ୍ଧ

ଏକ ଭୀଷଣ ଏକକ ଯୁଦ୍ଧରେ ଅବତୀର୍ଣ୍ଣ ହେଲେ ଦୁଇ ଭାଇ । ପରିଶେଷରେ ବାଲୀଙ୍କର ଏକ ଭୟଙ୍କର ପ୍ରହାରରେ ସୁଗ୍ରୀବ ନିସ୍ତେଜ ହୋଇ ଭୂମି ଉପରେ କରୁଡ଼ି ହୋଇ ପଡ଼ିଲେ । ଏହି ସଙ୍କଟାବସ୍ଥାରେ ନିକଟସ୍ଥ ବୃଦା ଉହାଡ଼ରୁ ଏକ ଶର ଆସି ବାଲୀଙ୍କ ବକ୍ଷ ଭେଦିକଲା । ବକ୍ଷରୁ ରକ୍ତଧାର ଛୁଟି ଜଳପ୍ରପାତ ପରି ସଶବ୍ଦରେ ବହିଗଲା । ଏ ଦୃଶ୍ୟ ଦେଖି ସୁଗ୍ରୀବଙ୍କ ଆଖିରେ ଲୁହ ଜମି ଆସିଲା ଓ ସେ ସଂଜ୍ଞା ହରାଇ ବସିଲେ । ଅତ୍ୟଧିକ ରକ୍ତସ୍ରାବ ଓ ଶଙ୍କା ଫଳରେ ଭୂଶାୟୀ ହେଲେ ବାଳୀ । ଏକ ଭୟଙ୍କର ଯନ୍ତ୍ରଣା ଯୋଗୁଁ ପ୍ରଚଣ୍ଡ କ୍ରୋଧରେ ବିସ୍ଫୋରଣ କରିଉଠିଲେ । ତାଙ୍କ ବକ୍ଷଦେଶ ବିଦ୍ଧ କରିଥିବା ବିଶାଳ ଶରକୁ ଟାଣିଆଣି ଆରମ୍ଭ କଲେ, 'ମୁଁ ଏହାକୁ ଦୁଇଖଣ୍ଡ କରି ଭାଙ୍ଗିଦେବି ।' ଏହା କହି ଉଠି ବସିଲେ ବାଳୀ । ତାପରେ ଶର ଉପରେ ଏକ ନାଆଁ ଖୋଦିତ ହେବାର ଦେଖି ଆଶ୍ଚର୍ଯ୍ୟ ହୋଇପଡ଼ିଲେ । ଏହା ଥିଲା ରାମଙ୍କର ପବିତ୍ର ନାମ । 'ମନ୍ତ୍ରସିଦ୍ଧ ଆଦ୍ୟ ଅକ୍ଷର' ଯାହା ତିନୋଟି ପୃଥିବୀକୁ ଉଦ୍ଧାର କରିବାକୁ ସମର୍ଥ, ଯାହାର ପବିତ୍ର ଉଚ୍ଚାରଣରେ ସ୍ୱର୍ଗୀୟ ଆଶୀର୍ବାଦର ଧାରା ଛୁଟିପାରେ, ଯାହାର ଅମୃତ ପାନକଲେ ଯୁଗଯୁଗର ସଂଗୃହୀତ କର୍ମ' ଉପଶମ ହୋଇଯାଏ ।

### ରାମଙ୍କ ପ୍ରତି ବାଳୀଙ୍କ ଭର୍ତ୍ସନା

ବୃଦା ଉହାଡ଼ରୁ ଆସି ରାମ ବାଳୀଙ୍କର ଏ କରୁଣ ଦୃଶ୍ୟ ଦେଖିଲେ । ବାଳୀ ଭୟଙ୍କର ଆଘାତ ପାଇ ରକ୍ତାକ୍ତ ଅବସ୍ଥାରେ ପଡ଼ିଥାନ୍ତି ଏବଂ ଏ ଦୁଃଖଦ ଦୃଶ୍ୟ ଦେଖି ସଂଜ୍ଞା ହରାଇ ପଡ଼ିଥାନ୍ତି ଅନୁଜ ସୁଗ୍ରୀବ । ଏକ ପରମ ଭକ୍ତ ଓ ବୀର ବାଳୀ ରାମଙ୍କ ଅନୁପମ ଶରୀର ଉପରେ ଦୃଷ୍ଟି ନିକ୍ଷେପ କଲେ । ନିଜ ଶରୀରରେ ଏ ଭୟଙ୍କର ଆଘାତ ଅପେକ୍ଷା ରାମଙ୍କ ପୁଣ୍ୟ ପଥରୁ ବିଚ୍ୟୁତ ଦେଖି ଅତୀବ ଚିନ୍ତାଗ୍ରସ୍ତ ହୋଇ ପଡ଼ିଲେ । ରାମଙ୍କୁ ଲକ୍ଷ୍ୟ କରି ସେ କହିଲେ, 'ଆପଣ ହେଉଛନ୍ତି ସେ ପବିତ୍ର ପିତାଙ୍କର

ପୁଣି ଯେ’ ସତ୍ୟରକ୍ଷା ପାଇଁ ନିଜର ପ୍ରାଣବଳୀ ଦେଲେ ଏବଂ ଆପଣ ହେଉଛନ୍ତି ସେ ପୁଣ୍ୟାତ୍ମା ଭରତଙ୍କ ଭ୍ରାତା । ମାତୃବନ୍ତ ପ୍ରେମ ଓ ଅନୁକମ୍ପାର ଆପଣ ଏକ ଜ୍ୱଳନ୍ତ ନିଦର୍ଶନ । ଯଦି କେହି କାହାକୁ ପାପରୁ ରକ୍ଷା କରିବା ପାଇଁ ନିଜେ ପାପର ଆଶ୍ରା କରେ, ତେବେ ପାପ କ’ଣ ପାପ ହୋଇ ରହେ ନାହିଁ ?’ ବାଲୀଙ୍କର ଅଭିଯୋଗ ତୀବ୍ରରୁ ତୀବ୍ରତର ହେଲି ଏବଂ ରାମଙ୍କର ଏହି ସାରତ୍ୱହୀନ କର୍ମ ପାଇଁ ସମସ୍ତ ବ୍ୟଙ୍ଗ ଓ ରୂଢ଼ତା ପ୍ରୟୋଗ କରି ବାଳୀ ତାଙ୍କୁ ଭର୍ତ୍ସନା କଲେ । ଯୁକ୍ତି ଓ ବୁଦ୍ଧିର ଶକ୍ତି ଦ୍ୱାରା ପ୍ରତିଷ୍ଠିତ ହୋଇଥିଲି ତାଙ୍କର ଅଭିଯୋଗ । ସେ ପ୍ରଶ୍ନକଲେ, ‘ମନୁଙ୍କ ନ୍ୟାୟଶାସ୍ତ୍ରରେ ଏହା କ’ଣ ଲେଖାଅଛି ଯେ, ରାକ୍ଷସ ଆପଣଙ୍କ ସ୍ତ୍ରୀଙ୍କୁ ଅପହରଣ କରିନେଲାବେଳେ ଏହା ସହି କୌଣସିମତେ ସମ୍ପୃକ୍ତ ନଥିବା ବାନରରାଜାଙ୍କୁ ଆପଣ ହତ୍ୟା କରିବେ ? ଆପଣ ଯଦି ନିଜେ ଅପଯଶରେ ନିଜକୁ ଅାଚ୍ଛାଦିତ କରିବେ, ତା’ହେଲେ ଯଶ ପରିଧାନ କରିବ କିଏ ?’ ଆଉ ବେଶି ରକ୍ତସ୍ରାବ ଫଳରେ, ବାଳୀ ପବନର ଗତି ପ୍ରତିରୋଧ କରି ଉଚ୍ଚ ସ୍ୱରରେ ବକ୍ତୃତା ଦେବା ଆରମ୍ଭ କଲେ, ‘କୋମଳ ସୀତାଙ୍କ ବିଚ୍ଛେଦରେ ଆପଣ ବୋଧହୁଏ ବିଚଳିତ ହୋଇପଡ଼ିଛନ୍ତି । ଏ କେଉଁ ନିର୍ବୋଧ କାମ କଲେ ଆପଣ ?’ ରାମଙ୍କ ସୂର୍ଯ୍ୟବଂଶୀୟ ପରମ୍ପରା ବିଷୟ ଉଲ୍ଲେଖ କରି ବାଳୀ କହିଲେ, ‘ଚନ୍ଦ୍ର ଯେଉଁପରି ଆକାଶ ଗର୍ଭରେ ଲୁଚିଗଲାବେଳେ ତାର କଳଙ୍କକୁ ବୋହି ନେଉଥାଏ ସେହିପରି ସୂର୍ଯ୍ୟବଂଶାନୁକ୍ରମରେ ଏପରି ଏକ କଳଙ୍କକୁ ଚିରଦିନ ବୋହି ବୋହି ଚାଲିବେ ଆପଣ ! ହେ ପ୍ରବଳ ପରାକ୍ରମୀ ବୀର ! ଆପଣ କେବଳ ବାଳୀକୁ ଧ୍ୱଂସ କରି ଦେଲେନି, ରାଜକୀୟ କର୍ତ୍ତବ୍ୟର ଚତୁଃପାର୍ଶ୍ୱେ ଘେରି ରହିଥିବା ସମସ୍ତ ପ୍ରାଚୀରକୁ ଧ୍ୱଂସ କରି ଦେଲେ ।’ ବାଳୀଙ୍କ କ୍ରୋଧର ଶେଷ ପରିଣତି ନିମ୍ନଲିଖିତ ପଦ୍ୟରେ ପ୍ରକଟିତ ହୋଇଛି ।

> ଧନୁର୍ବିଦ୍ୟା ଶିଖିଥିଲେ କ’ଣ ଏଥିପାଇଁ
> ମାରିବେ କା’ ଉପରେ ଶର ବୃକ୍ଷାମୂଳେ ଥାଇ
> ମୁହାଁମୁହିଁ ସଂଘର୍ଷ କି ପାରିବେନି କରି
> ନିରସ୍ତ୍ର ଗ୍ରୀବରେ କ’ଣ ଶର ଦେବେ ବାନ୍ଧି !
> ଧିକ୍ ଧିକ୍ ତମ ସ୍ତ୍ରୀ ଅନ୍ୟ ଦ୍ୱାରା ହୃତ
> ଧିକ୍ ଧିକ୍ ତମ ଧନୁ ତମ କାର୍ଯ୍ୟେ ଆଜି କଳଂକିତ ।

### ଆଧ୍ୟାତ୍ମିକ ଉପଲବ୍ଧି

ରାମଙ୍କ ଧର୍ମୀୟ ଭକ୍ତମାନେ ବାଳୀଙ୍କ ଉତ୍ତିଙ୍କର ଅଭିଯୋଗରୁ ରାମଙ୍କୁ ରକ୍ଷା କରିବାକୁ ଯାଇ ପରବର୍ତ୍ତୀକାଳରେ ଏହି ପଦ୍ୟ ପରେ ଅନେକ ପଦ୍ୟ କମ୍ବନ ରାମାୟଣରେ ସନ୍ନିବେଶିତ କରିଛନ୍ତି । ଏହିସବୁ ପଦ୍ୟରେ ରାମଙ୍କ ନିଜ ସପକ୍ଷ ଯୁକ୍ତି

କମ୍ବନଙ୍କ ସୃଷ୍ଟିର ସ୍ୱର ଓ ସ୍ୱାକ୍ଷର ବହନ କରେନି, ବରଂ ତାଙ୍କର ଯୁକ୍ତି ଅନେକଟା
ନୀରସ ଓ ଅବିଶ୍ୱାସ୍ୟ ମନେ ହୁଏ । ସ୍ୱର୍ଗତ ରସିକମଣି ଟି.କେ ଚିଦାମ୍ବରନାଥ
ମୁଦାଲିୟର, ଯିଏ ସ୍ୱଭାବତଃ ଜଣେ କବି ଥିଲେ ଏବଂ କମ୍ବନଙ୍କ ଉପରେ ତାଙ୍କର
ଅନୁଶୀଳନ ଏ କ୍ଷୁଦ୍ର ପୁସ୍ତକର ଲେଖକଙ୍କୁ ଗଭୀର ଭାବେ ଅନୁପ୍ରାଣିତ କରିଥିଲା । ସେ
ଏହିସବୁ ପଦ୍ୟକୁ କୃତ୍ରିମ କହି ପ୍ରତ୍ୟାଖ୍ୟାନ କରିଛନ୍ତି । ତାଙ୍କ ମତରେ, କମ୍ବନଙ୍କ
ରାମ ନିଶ୍ଚିତ ଭାବେ ନିଜର ଭୁଲ ସ୍ୱୀକାର କରି ବୁଦା ଉହାଡ଼ରେ ଲୁଚିରହି ବାଲୀଙ୍କୁ
କ୍ଷତାକ୍ତ କରିଥିବା ଯୋଗୁଁ ବାଲୀଙ୍କୁ ଅତି ସାହସର ସହି କ୍ଷମା ପ୍ରାର୍ଥନା କରିଥିବେ ।
ରାମଙ୍କର ଭୁଲ ସ୍ୱୀକାର କରିବାର ସାହସ ଦେଖି ବାଲୀ ରାମଙ୍କ ଦେବତ୍ୱ ବିଷୟରେ
ନିଃସନ୍ଦେହ ହୋଇଯାଇଥିବେ ଏବଂ ବାଲୀଙ୍କ ବିଚାରରେ, ରାମ ସମ୍ମାନବୋଧର ବହୁ
ଊର୍ଦ୍ଧ୍ୱକୁ ଉଠି ଯାଇଥିବେ । ବାଲୀଙ୍କ ହୃଦବୋଧ ହୋଇଛି ଯେ, ସେ ସୁଗ୍ରୀବଙ୍କୁ ଭୁଲ
ବୁଝି ତାଙ୍କୁ ବହୁ ଅସୁବିଧାର ସମ୍ମୁଖୀନ କରାଇଛନ୍ତି । ସୁଗ୍ରୀବଙ୍କୁ ଏଣୁ ସେ ରାମଙ୍କ
ଦେବତ୍ୱ ଉପଲବ୍ଧି କରି ନିଜର ଗୁରୁ ମାନିବାକୁ ପରାମର୍ଶ ଦେଇଛନ୍ତି । ଏହାପରେ
ସୁଗ୍ରୀବଙ୍କୁ ଆଶ୍ରୟ ଦେବାଲାଗି ରାମଙ୍କୁ ଅନୁରୋଧ କରିଛନ୍ତି ବାଲୀ ।

ଠିକ୍ ଏହି ସମୟରେ ବାଲୀଙ୍କ ପୁତ୍ର ଅଙ୍ଗଦ ଜଙ୍ଗଲ ଡାଲୁରେ ଦୌଡ଼ି ଦୌଡ଼ି
ମରଣୋନ୍ମୁଖ ପିତାଙ୍କ ନିକଟରେ ପହଞ୍ଚି ଶୋକ ପ୍ରକଟ କରିଛନ୍ତି । ଆଖିରେ
ତାଙ୍କର ଭରି ଲୁହ । କବିଙ୍କ ଭାଷାରେ, ପୃଥିବୀ ଉପରେ ଚନ୍ଦ୍ର ପଡ଼ିଥିବା ପରି ବାଲୀ
ପଡ଼ିଥିବା ଭୂମି ଉପରେ ଆକାଶର ବିଜୁଳି ପରି ଅଙ୍ଗଦ କଚାଡ଼ି ହୋଇ ପଡ଼ିଲେ ।

ପୁତ୍ରଙ୍କର ଗଭୀର ଯନ୍ତ୍ରଣା ଦେଖି ବିଚଳିତ ହୋଇ ପଡ଼ିଲେ ବାଲୀ । ତେବେ
ପୁତ୍ରଙ୍କୁ ଶିଶୁସୁଲଭ କ୍ରୋଧ ପରିତ୍ୟାଗ କରି ଈଶ୍ୱରଙ୍କ 'ଚରମ ବାସ୍ତବତା'
(Ultimate Reality)ର ନିର୍ମଳ ରୂପରେଖ ଆହରଣ କରିବାକୁ ପରାମର୍ଶ
ଦେଲେ । ଯେଉଁ ବାସ୍ତବତାର ସ୍ୱରୂପ ରାମଙ୍କଠାରେ ପରିବ୍ୟକ୍ତ ଥିଲା, ହାତରେ ଧନୁ
ଧାରଣ କରି ଭୂମି ଉପରେ ପାଦ ଥାପି ଚାଲୁଥିଲେ ଏବଂ ଯାହାଙ୍କୁ କେବଳ ଇନ୍ଦ୍ରିୟ
ମାଧ୍ୟମରେ ଉପଲବ୍ଧି କରିହେବ । ଏହାପରେ ବାଲୀ କହିଲେ 'ହେ ପୁତ୍ର ! ରାମ
ହେଉଛନ୍ତି ଅମୃତ, ଯାହାକୁ ପାନ କଲେ ଜନ୍ମଜନିତ ବ୍ୟାଧିର ଉପଶମ ହୁଏ ।
ଆତ୍ମାର ପରିପକ୍ୱତା ବିଚାରରେ ଈଶ୍ୱର କରୁଣା ଅଜାଡ଼ିଥାନ୍ତି ଏବଂ ପ୍ରତ୍ୟେକଙ୍କୁ ନିଜ
ନିଜର ପ୍ରାପ୍ୟ ହିଁ ଦେଇଥାନ୍ତି । ତାଙ୍କର ପବିତ୍ର ପାଦ ନିଜ ଶିର ଉପରେ ଧାରଣ କରି
ତମେ ଉନ୍ନତି କରିବ ।' ଏହାପରେ ରାମଙ୍କୁ ଲକ୍ଷ୍ୟ କରି କହିଲେ, 'ଅଙ୍ଗଦ ଠିକ୍ ନିଆଁ
ପରି, ଯେ ରାକ୍ଷସ ରୂପକ ତୁଳାକୁ ପୋଡ଼ି ଦେଇ ପାରିବ । ମୁଁ ଆପଣଙ୍କ ରକ୍ଷା ପାଇଁ
ତାକୁ ଆପଣଙ୍କ ଦାୟିତ୍ୱରେ ଅର୍ପଣ କରୁଅଛି ।' ତତ୍କ୍ଷଣାତ୍, ରାମଙ୍କ ପାଦ ତଳେ
ଅଙ୍ଗଦ ପ୍ରଣିପାତ କଲେ ଏବଂ ତାଙ୍କ ଆଡ଼କୁ ଏକ ସ୍ୱର୍ଣ୍ଣର ଖଡ୍ଗ ବଢ଼େଇ ଦେଇ

ରାମ କହିଲେ, 'ଏହାକୁ ଗ୍ରହଣ କର ।' ଠିକ୍ ଏହି ମୁହୂର୍ତ୍ତରେ ବାଳୀ ମରଣଶରୀର ପରିତ୍ୟାଗ କରି ସଂସାର ପାରିର ଜୀବନ ଗ୍ରହଣ କଲେ ।

ସ୍ୱାମୀଙ୍କୁ ହରାଇ ତାରା ଗଭୀର ଶୋକରେ ଭାଙ୍ଗି ପଡ଼ିଲେ । କମ୍ବନ ତାରାଙ୍କ ଦୁଃଖର ଗଭୀରତାକୁ ପରିବ୍ୟକ୍ତ କରିବା ପାଇଁ ବ୍ୟାକୁଳତା ପରିପୂର୍ଣ୍ଣ ଶବ୍ଦ ବ୍ୟବହାର କରିଛନ୍ତି । ନିଜ ଶୋକରେ ତାରା ଏକ ବିଧ୍ୱଂସାତ୍ମକ ଯୁକ୍ତି ବାଢ଼ିଛନ୍ତି—ଯାହା ସେ ଓ ବାଳୀ ଉଭୟଙ୍କ ହୃଦୟରେ ରହିଥିବା ମାୟାକୁ ଧ୍ୱଂସ କରି ଦେଇଛି ।

ହେ ପରମ ପୂଜନୀୟ ବୀରଙ୍କ ଈଶ୍ୱର !
ଯଦି ପାରିଥାନ୍ତି ରହି ତମ ହୃଦୟର
ଯେଉଁ ତୀର ବିଦ୍ଧ କଲା ତାକୁ ଯାଇ ଖର
ନିଶ୍ଚୟ ସେ ଶୋଷିଥାନ୍ତା (ମୋ) ଜୀବନ ରୁଧିର
ଯଦି ତମେ ଥାନ୍ତ ମୋର ଏଇ ହୃଦୟରେ
ବଞ୍ଚିଥାନ୍ତ ତମେ କ'ଣ କେବେ ମାନି ଅରେ ?
ଉଭୟେ ତ କେବେହେଲେ ନୁହଁଇ ଏକକ
ଅନ୍ୟ ହୃଦୟରେ କିଏ ବଞ୍ଚି କି ପାରିବ ?



# ସୁନ୍ଦର କାଣ୍ଡ

କମ୍ବନ 'ସୁନ୍ଦର କାଣ୍ଡ'କୁ ସୀତାଙ୍କ ଅନ୍ୱେଷଣରେ ଆରମ୍ଭ କରିଛନ୍ତି । ସୀତାଙ୍କୁ ଖୋଜିବା ପାଇଁ ବିଭିନ୍ନ ଦିଗରେ ବାନର ଦୂତମାନଙ୍କୁ ପଠାଯାଇଛି । ହନୁମାନ ସମୁଦ୍ର ପାର ହୋଇ ଲଙ୍କାରେ ସନ୍ଧ୍ୟା ସମୟରେ ପହଞ୍ଚିଛନ୍ତି । ଅପୂର୍ବ ସୌନ୍ଦର୍ଯ୍ୟରେ ଅତୀବ ସୁନ୍ଦର ଦିଶୁଛି ଲଙ୍କାଗଡ଼ । ଅତି ଆଶ୍ଚର୍ଯ୍ୟ ଚକିତ ହୋଇ ଘରଗୁଡ଼ିକର ସୌନ୍ଦର୍ଯ୍ୟକୁ ନିରୀକ୍ଷଣ କରିଛନ୍ତି ହନୁମାନ ।

ସୂର୍ଯ୍ୟଙ୍କ କିରଣେ କ'ଣ ତିଆରି ଏମାନେ ?<br>
ବିଜୁଳିର ଝଲକରେ ଗଢ଼ା କି ଏମାନେ ?<br>
ତରଳ ସୁନାରେ କ'ଣ ହୋଇଛନ୍ତି ଗଢ଼ା ?<br>
ହୀରା ଆଉ ମୋତିଦ୍ୱାରା ହୋଇ ବିଭୂଷିତା !<br>
ପ୍ରତେ ତ ହେଉନି ମୋର କପରି ତିଆରି<br>
ଦୁର୍ଗ ଭେଦ ଯାଇଛନ୍ତି ମେଘଙ୍କର ଗ୍ରନ୍ଥି<br>
ଚନ୍ଦ୍ର ସହ ନିତି ନିତି ଧକ୍‌କା ଖାଇ ଖାଇ ।

## ସତୀତ୍ୱର ଦୀପଶିଖା

ସୀତାଙ୍କ ଅନ୍ୱେଷଣରେ ହନୁମାନ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଗଲେ । ଖୋଦିତ ଝର୍କା ଓ କବାଟ ଫାଙ୍କରେ ଦେଖିଲେ, କିନ୍ତୁ କେଉଁଠି ହେଲେ ସୀତାଙ୍କ ସନ୍ଧାନ ପାଇଲେ ନାହିଁ । ନିରାଶ ହୋଇ ସେ ସହରରୁ ଫେରିଆସି ଅଶୋକ ବନରେ ପହଞ୍ଚିଛନ୍ତି; ଗୋଟିଏ ଗଛ ଉପରେ ଚଢ଼ି ତା ଉପରେ ବସିଛନ୍ତି । ଗଛର କିଛି ଦୂରରେ ପଡ଼ିଆରେ କୌଣସି ଏକ ଭୂମି ଉପରେ ସୀତାଙ୍କୁ ବିମର୍ଷ ଓ ଚିନ୍ତାକୁଳ ହୋଇ ବସିଥିବାର ଦେଖିଛନ୍ତି ହନୁମାନ । ସିଏମାନଙ୍କ ଆଖିରେ କୃଷ୍ଣବାଦଲଖଣ୍ଡ କିମ୍ବା କୃଷ୍ଣ ରଙ୍ଗର ଛିନ୍ନପଟ ପରି କୌଣସି ପଦାର୍ଥ ଦେଖି ସୀତା ବିମର୍ଷ ହୋଇ ପଡ଼ିଛନ୍ତି—ରାମଙ୍କର ସ୍ମୃତି ତାଙ୍କ ମାନସପଟରେ ଭାସିଉଠିଛି । ରାମଙ୍କୁ ଆଶା କରି ସେ ପୃଥିବୀର ସମସ୍ତ ଦିଗରେ ଆଖି ବୁଲେଇ ଆଣିଛନ୍ତି । ଆଶା କିନ୍ତୁ ନିରାଶାରେ ରୂପାନ୍ତରିତ ହୋଇଛି, କାରଣ ରାବଣ ତାଙ୍କୁ ହରଣ କରିନେବା କଥା ରାମ

ଜାଣିଛନ୍ତି କି ନା—ସେ ଏ ବିଷୟରେ ଅଦ୍ୟାବଧି ସନ୍ଦିହାନ ଥିଲେ । ରାମଙ୍କର ଅନୁପମ ଗୁଣସମୂହ ତଥା ରାମଙ୍କ ସହ କଟେଇଥିବା କେତୋଟି ସ୍ନିଗ୍ଧ ଅନୁଭୂତି ତାଙ୍କ ସ୍ମୃତିପଟରେ ଭାସି ଉଠିଛି । ଗଙ୍ଗା ନଦୀରେ ନୌକା ବାହିନେଉଥିବା ବିଗୁଦ ନୌଗୁହଲକକୁ ରାମ କହିଲେ, 'ମୋ ଭାଇ ହିଁ ତୁମ ଭାଇ; ମୁଁ ତୁମର ବନ୍ଧୁ, ଏ ସ୍ତ୍ରୀ ହେଉଛନ୍ତି ତୁମର ଭାଉଜ ।' ନିର୍ମଳ ବନ୍ଧୁତ୍ୱର ଏପରି ଏକ ଉଜ୍ଜ୍ୱଳ ଉଦାହରଣ ବିଷୟ ମନେ ପଡ଼ିବାରୁ ସୀତାଙ୍କ ହୃଦୟ ବିମର୍ଷ ଭାବରେ ପୂରିଯାଇଥିଲା ।

ସୀତା ଏପରି ଏକ ବ୍ୟଥାପୂର୍ଣ୍ଣ ମାନସିକ ଅବସ୍ଥାରେ ଥିଲାବେଳେ ହନୁମାନ ତାଙ୍କୁ ଦେଖିପାରିଲେ ।

ସୀତାଙ୍କର ଏପରି ବିଷାଦଦଗ୍ଧ ଅବସ୍ଥାରେ ତାଙ୍କର ଅଟଳ ସତୀତ୍ୱ, ନମ୍ରତା ଓ ଆଭିଜାତ୍ୟ ବିଷୟ ଚିନ୍ତା କରି ଅତୀବ ଆଶ୍ଚର୍ଯ୍ୟାନ୍ୱିତ ହେଲେ ହନୁମାନ । ସୀତା ଆନନ୍ଦରେ ଥିଲାବେଳେ ରାମଙ୍କ ଆଖି କେବଳ ତାଙ୍କର ଅନୁପମ ସୌନ୍ଦର୍ଯ୍ୟ ଉପଭୋଗ କରିଥିଲା । କିନ୍ତୁ ନିଜର ତୀବ୍ରତମ ଯନ୍ତ୍ରଣା ଭିତରେ ନିଜର ସତୀତ୍ୱ ରକ୍ଷା କରିଥିଲା ବେଳେ ସେ ସହସ୍ରଗୁଣ ଅଧିକ ସୁନ୍ଦରୀ ଦିଶୁଥିଲେ । ହନୁମାନ ଭାବିଲେ, 'ଦୁଃଖର ବିଷୟ, ଏତେ ରମଣୀୟ ଦୃଶ୍ୟ ଦେଖିବାରୁ ରାମ ଏବେ ବଞ୍ଚିତ !'

ଠିକ୍ ଏହି ସମୟରେ ସୀତାଙ୍କ ନିକଟକୁ ଆସିଛି ରାବଣ ଓ ହନୁମାନଙ୍କ ମନ ବିଚଳିତ ହୋଇପଡ଼ିଛି ।

ସୀତାଙ୍କଠାରୁ ବେଶ୍ କିଛି ଦୂରରେ ବିନୟଭାବେ ଅତି ସନ୍ତର୍ପଣ ସହକାରେ ଠିଆହୋଇଛି ରାବଣ । ହନୁମାନଙ୍କ ଉପଲବ୍ଧି ହୋଇଛି ଯେ—ରାବଣ ଅଗ୍ନିର ଅତି ନିକଟକୁ ଯିବାକୁ ଭୟ କରୁଛି ।

ରାବଣର ଇଚ୍ଛାଶକ୍ତି ଥିଲା ଲୁହା ଭଳି ଶକ୍ତ ଏବଂ ତାର ମନ ଥିଲା ଅତୀବ ସ୍ଥିର, ଅଟଳ କିନ୍ତୁ ସୀତାଙ୍କ ଉପସ୍ଥିତିରେ ତାର ସମସ୍ତ ଦୃଢ଼ତା ଲୋପ ପାଇ ଯାଇଥିଲା । ସୀତାଙ୍କୁ ସେ କହିଲା—

ତିନି ପୃଥିବୀରେ ଛନ୍ତି ଯେତେ ଜୀବଜନ୍ତୁ
ସମସ୍ତେ କରନ୍ତି ପୂଜା ମୁଁ ତାଙ୍କର ଗୁରୁ
କିନ୍ତୁ ମୁଁ କରୁଛି ପୂଜା ହେ ସୁନ୍ଦରୀ ତୋରେ
ଦୟା କରି ଗ୍ରହଣ ଗୋ କର ମୋତେ ଥରେ ।

ରାବଣ ଏହା କହିଛି କି ନାହିଁ, ସୀତାଙ୍କ ଆଖିରୁ ରକ୍ତ ଝରିବାକୁ ଲାଗିଲା ଏବଂ ରାବଣଙ୍କ ମୁହଁକୁ ନ ଚାହିଁ ସେ କ୍ରୋଧଜର୍ଜରିତ ଶବ୍ଦ ପ୍ରୟୋଗ କରି କହିଲେ—

ଲଂଘିବାକୁ ପଡ଼େ ଯଦି ମେରୁ ପରବତ
ଆକାଶକୁ କରିବାକୁ ଭାଙ୍ଗି ଖଣ୍ଡ ଖଣ୍ଡ
ଚଉଦ ଭୁବନ କରିବାକୁ ଛାରଖାର
କରିପାରେ ଏହା ମୋ ସ୍ୱାମୀଙ୍କ ଧନୁଃଶର
ହେ ବିଜ୍ଞାମି ଅଧମ ତୁ ଶୁଣ ମୋର ଗିର
ଏ ଶବ୍ଦ କହିଲେ ଦଶ ଶିର ହେବ ଚୂର ?
ତୋର ଦଶ ଶିର ଆଉ ବହୁବିଧ କାନ୍ଧ
ହେବେ ସେ ଲକ୍ଷ୍ୟର ବସ୍ତୁ ମୋ ସ୍ୱାମୀଙ୍କ ତୀର
ସେହି ସିଦ୍ଧ ଧନୁର୍ଦ୍ଧାରୀ ଖେଳିବେ ତୀରରେ
ତୋତେ ସେ କରିବେ ଶେଷ ଅତି ସହଜରେ
ତପ ବଳେ ଅର୍ଜିଅଛୁ ଯେତେ ଯେତେ ବର
ତପ ବଳେ ଅର୍ଜିଅଛୁ ଦୀର୍ଘ ତୋ ଜୀବନ
ତା' ଦେଖି ହୁଏତ ଯମ ଛାଡ଼ିଦେବ ତୋତେ
କିନ୍ତୁ ତୋ ନିସ୍ତାର ନାହିଁ ମୁହିଁ ନିଶ୍ଚେ ସେ ବୀରଙ୍କ ହାତେ ।

ସୀତାଙ୍କର ଏପରି ବଚନ ଶୁଣି ରାବଣର 'କ୍ରୋଧର ଶକ୍ତି ଏପରିକି ତାର କାମ-ଶକ୍ତିକୁ ମଧ୍ୟ ଅତିକ୍ରମ କରିଗଲା' । କ୍ରୋଧରେ ଜର୍ଜରିତ ହୋଇ ଅଶୋକ ବନ ଛାଡ଼ି ଚାଲିଗଲା ରାବଣ । ଏହି ରୋମାଞ୍ଚକର ଦୃଶ୍ୟକୁ ହନୁମାନ ବୃକ୍ଷର ଶୀର୍ଷରୁ ଅବଲୋକନ କରୁଥିଲେ ଏବଂ ସତୀତ୍ୱର ଦୀପଶିଖା ଉଜ୍ଜ୍ୱଳତର ହୋଇ ଜଳୁଥିବାର ଲକ୍ଷ୍ୟ କରି ଅତୀବ ପ୍ରସନ୍ନ ହେଲେ ।

ବର୍ତ୍ତମାନ ମଧ୍ୟରାତ୍ରି ଏବଂ ହନୁମାନ ଚିନ୍ତାକଲେ, ସୀତାଙ୍କୁ ସାକ୍ଷାତ କରିବାର ଏହା ହେଉଛି ପ୍ରକୃଷ୍ଟ ସମୟ । ଗଛରୁ ଓହ୍ଲାଇ ଆସି ଦେଖିଲେ ଗୁଡ଼ାଏ ରାକ୍ଷସୀ ସୀତାଙ୍କୁ ବୃତ୍ତାକାରରେ ଘେରି ରହିଛନ୍ତି । ସେମାନେ ଏତେ ସତର୍କ ଓ ସାବଧାନ ଥିଲେ ଯେ, ଯଦି ସତର୍କତାର ଦେବୀ ନିଜେ ନିଦରେ ଶୋଇଯିବେ, ତେବେ ତାଙ୍କୁ ମଧ୍ୟ ସେମାନେ ସତର୍କ କରିଦେବେ । ହନୁମାନ ନିଜର ତାନ୍ତ୍ରିକ ଇନ୍ଦ୍ରଜାଲ ଶକ୍ତି ପ୍ରୟୋଗ କରି ସେମାନଙ୍କୁ ନିଦ୍ରାରେ ବିଭୋର କରିଦେଲେ । କେବେ ନିଦ୍ରା ଯାଉନଥିବା ରାକ୍ଷସୀମାନଙ୍କୁ ଶୋଇବାର ଦେଖି ସୀତା ବଡ଼ ଏକାକୀ ଅନୁଭବ କଲେ ଏବଂ ଭୟ ଓ ଦୁଃଖରେ ଭାଙ୍ଗି ପଡ଼ିଲେ । ସତେ କ'ଣ ରାମ ତାଙ୍କୁ ଖୋଜି ପାଇବେ ଓ ଉଦ୍ଧାର କରିବେ — ଏପରି ସଂଶୟରେ ଘାରି ହେଲେ ସୀତା । କିମ୍ବା ତାଙ୍କୁ କ'ଣ ସେ ପରିତ୍ୟାଗ କରିବେ ? ପରିଶେଷରେ ମରିଯିବାଟା କର୍ତ୍ତବ୍ୟ ବୋଲି ମନସ୍ଥ କଲେ ସୀତା । ଏପରି ମାନସିକ ଅବସ୍ଥାରେ ସେ ଘଞ୍ଚ ମାଧବୀଲତାପୂର୍ଣ୍ଣ କୁଞ୍ଜରେ ପ୍ରବେଶ କଲେ ।

ଠିକ୍ ଏହି ସମୟରେ ସୀତାଙ୍କ ସମ୍ମୁଖରେ ପହଞ୍ଚି ନିଜକୁ ରାମଙ୍କ ଦୂତ ବୋଲି ପରିଚୟ ଦେଲେ ହନୁମାନ । ସୀତାଙ୍କ ବିଶ୍ୱାସ ପାଇଁ ସେ ରାମ ଓ ସୀତା କେବଳ ଜାଣିଥିବା କୌଣସି ଘଟଣାର ବର୍ଣ୍ଣନା କଲେ ।

ଏସବୁ ଶୁଣିଲା ପରେ ନିଜ ପ୍ରତି ଥିବା ରାମଙ୍କ କୋମଳତାର ଏକ ଆଶ୍ୱାସନାପୂର୍ଣ୍ଣ ପ୍ରମାଣ ପାଇଲେ ସୀତା । ହନୁମାନ ଏହାପରେ ରାମଙ୍କ ନାମ ଖୋଦିତ ଏକ ମୁଦ୍ରିକା ସୀତାଙ୍କୁ ବଢ଼ାଇଦେଲେ ଏବଂ କହିଲେ, 'ରାମ ମୋତେ ଏଇଟିକୁ ଅତି ଯତ୍ନରେ ଆଣି ଆପଣଙ୍କୁ ଦେବା ଲାଗି କହିଥିଲେ ।'

ମୁଦ୍ରିକାକୁ ଦେଖି ସୀତା ଅତୀବ ଉଲ୍ଲାସ ଅନୁଭବ କଲେ । ମୁଦ୍ରିକାକୁ ଆଘ୍ରାଣ କରି ନିଜ ଛାତିରେ ଚାପି ଧରିଲେ ସୀତା । ହନୂମାନଙ୍କୁ କହିଲେ, 'ହେ ଭଦ୍ର ! ଆପଣ ମୋତେ ଜୀବଦାନ ଦେଲେ । ଯଦି ମୋର ମନ ସ୍ଫଟିକ ପରି ନିର୍ମଳ ଥିବ, ତେବେ ଆପଣ ଚିରଦିନ ଆଜର ଶକ୍ତିସହ ବଞ୍ଚି ରହିବେ । ଚଉଦ ଭୁବନର ସମସ୍ତ କଷ୍ଟ ଆପଣଙ୍କୁ ଛୁଇଁପାରିବ ନାହିଁ ଏବଂ ପ୍ରତ୍ୟେକ କାଳକୁ ଗୋଟିଏ ଦିନ ପରି ଆପଣ କାଳ କାଳ ବଞ୍ଚି ରହିବେ ।' ଏତେ ଶ୍ରେଷ୍ଠ ଶରୀର ନେଇ ହନୂମାନ କିପରି ଏତେ ବିଶାଳ ସମୁଦ୍ର ପାର ହେଲେ, ତା' ଭାବି ସୀତା ବଡ଼ ଆଶ୍ଚର୍ଯ୍ୟ ହେଲେ । ସୀତାଙ୍କ ପ୍ରଶ୍ନର ଉତ୍ତରରେ ହନୂମାନ ତାଙ୍କର ବିଶାଳ (ବିଶ୍ୱରୂପ) ଧାରଣ କଲେ । ଗୋଟିଏ ମୁହୂର୍ତ୍ତରେ ସେ ଦୀର୍ଘରୁ ଦୀର୍ଘତର ହେଲେ ; ତାଙ୍କର କାନ୍ଧ ଉପରକୁ ବଢ଼ିବାକୁ ଲାଗିଲା । ଶେଷରେ ଆକାଶର ଛାତକୁ ଛୁଇଁଲା ତାଙ୍କର ଶରୀର । ଏଣୁ ସେ ଶରୀର ନତ କରି ଠିଆ ହେଲେ, କାଳେ ସେ ଛାତରେ ପିଚି ହୋଇପଡ଼ିବେ । ଏପରି ବିସ୍ମୟକର ଦୃଶ୍ୟ ଦେଖି ସୀତାଙ୍କର ସମସ୍ତ ସନ୍ଦେହ ଦୂରୀଭୂତ ହୋଇଗଲା ଏବଂ ସେ ଅତୀବ ସୁରକ୍ଷିତ ମନେକଲେ । ସୀତାଙ୍କ ନିର୍ଦ୍ଦେଶରେ ହନୂମାନ ନିଜର ପୂର୍ବରୂପ ଧାରଣ କଲେ । ହନୂମାନଙ୍କ ଭୂୟସୀ ପ୍ରଶଂସା କରି କହିଲେ ସୀତା, 'ସାତ ସମୁଦ୍ରର ଅପର ପାର୍ଶ୍ୱରେ ଅବସ୍ଥିତ ଲଙ୍କାଗଡ଼ରେ ପ୍ରବେଶ କରି ଆପଣ ଯେଉଁ ସାହସିକତା ପ୍ରଦର୍ଶନ କରିଛନ୍ତି, ତାହା ଆପଣଙ୍କ ବୀରତ୍ୱରେ କେବେ କ'ଣ କଳଙ୍କ ଲେପି ପାରିବ ?' ଏହାପରେ ଏକ ସୁନ୍ଦର କଥୋପକଥନ ଆରମ୍ଭ ହୋଇଛି ଯେଉଁଥିରେ କମ୍ବନ ପର୍ଯ୍ୟାୟକ୍ରମେ ସୀତାଙ୍କ ଆବେଗକୁ ଅତି ସୁନ୍ଦର ଭାବେ ଚିତ୍ରିତ କରିପାରିଛନ୍ତି । ପରିଶେଷରେ ସୀତା ହନୁମାନଙ୍କୁ କହିଛନ୍ତି, 'ମୋ ସ୍ୱାମୀଙ୍କୁ କହିବେ, ମୁଁ ଆଉ ଗୋଟିଏ ମାସ ଅପେକ୍ଷା କରିବି ଏବଂ ଏ ସମୟ ମଧ୍ୟରେ ସେ ଯଦି ଉଦ୍ଧାର କରିବାକୁ ସମର୍ଥ ନ ହୁଅନ୍ତି, ତେବେ ଗଙ୍ଗାନଦୀ କୂଳରେ ସେ ମୋର ଶେଷକୃତ୍ୟ ସମାପନ କରିବେ ।' ଏହାପରେ ପୁଣି କହିଲେ, 'ତାଙ୍କୁ ତାଙ୍କର ବିବାହକାଳୀନ ଶପଥ ଯଥା- ମୁଁ ଏ ଜୀବନରେ ଏପରିକି ମାନସିକ ସ୍ତରରେ ମଧ୍ୟ, ଅନ୍ୟ କୌଣସି ସ୍ତ୍ରୀ ଗ୍ରହଣ କରିବି ନାହିଁ'

ବିଷୟ ସ୍ମରଣ କରିଦେବେ ।' ସୀତାଙ୍କୁ ଏ ପ୍ରଶ୍ନର ଉତ୍ତର ଦେଇ ତଥା ତାଙ୍କୁ ସଫଳ ଭାବେ ଆଶ୍ୱସ୍ତ କରି ହନୁମାନ ସୀତାଙ୍କଠାରୁ ବିଦାୟ ନେଲେ । ଏହାପରେ ସୀତା ହନୁମାନଙ୍କୁ ନିଜର ଚୂଡ଼ାମଣି (ଶିରଭୂଷଣ)କୁ ରାମଙ୍କୁ ଦେବା ପାଇଁ ପ୍ରଦାନ କଲେ । ସୀତାଙ୍କ ଆଶୀର୍ବାଦ ନେଇ ହନୁମାନ ଅଶୋକବନ ପରିତ୍ୟାଗ କଲେ ଏବଂ ଲଙ୍କାରେ ଅଗ୍ନି ସଂଯୋଗ କରି, ସମୁଦ୍ର ପାର ହୋଇ ରାମଙ୍କ ନିକଟକୁ ଫେରିଗଲେ ।

## ହନୁମାନଙ୍କ ପ୍ରତ୍ୟାବର୍ତ୍ତନ

ବର୍ତ୍ତମାନ କଥା ରାମଙ୍କ ନିକଟକୁ ଫେରି ଯାଇଛନ୍ତି । ବାନର ସୈନ୍ୟଙ୍କ ଏକ ଦଳ ପଠାଇସାରି ସୁଗ୍ରୀବ ରାମଙ୍କ ନିକଟରେ ବସିରହି ତାଙ୍କୁ ଆଶ୍ୱାସନା ଦେଉଥାନ୍ତି । ତାଙ୍କ ମନ ସନ୍ଦେହରେ ପୂରିଯାଇଥିଲା ବେଳେ, ହଠାତ୍ ଦକ୍ଷିଣ ଦିଗ୍‌ବଳୟରେ ଆଲୋକର ଏକ ଝଲକ ଦେଖା ଦେଇଛି । 'ସତେ ଅବା ଦକ୍ଷିଣରେ ସୂର୍ଯ୍ୟ ଉଦୟ ହୋଇଛନ୍ତି'—ଏହିପରି ହନୁମାନ ପ୍ରବେଶ କଲେ । ରାମଙ୍କ ନିକଟରେ ପହଞ୍ଚି ହନୁମାନ ତାଙ୍କ ପାଦ ତଳେ ପ୍ରଣିପାତ କଲେ । ସୀତା ରହିଥିବା ଦିଗରେ ସାଷ୍ଟାଙ୍ଗ ପ୍ରଣିପାତ କରି ସୀତାଙ୍କ ପ୍ରଶଂସାରେ ଶତମୁଖ ହେଲେ ହନୁମାନ । ସେ କହିଲେ, 'ସମୁଦ୍ରଧୌତ ଲଙ୍କା ଦ୍ୱୀପରେ ସର୍ବାଙ୍ଗର ଭୂଷଣ ସୀତାଙ୍କୁ ମୁଁ ସ୍ୱଚକ୍ଷୁରେ ଦେଖି ଆସିଛି । ହେ ସକଳ ବିଶ୍ୱର ଈଶ୍ୱର ! ଆପଣ ସନ୍ଦେହ ଓ ଶୋକ ପରିତ୍ୟାଗ କରନ୍ତୁ ।' ସୀତାଙ୍କ ପବିତ୍ରତା ବିଷୟରେ ଅପୂର୍ବ ବର୍ଣ୍ଣନା ଶୁଣି ରାମ ଆବେଗରେ ଅଧୀର ହୋଇପଡ଼ିଲେ । ବର୍ତ୍ତମାନ ସୀତାଙ୍କ ମୁକ୍ତି ହିଁ ଥିଲା ତାଙ୍କର ଏକାନ୍ତ କାମ୍ୟ ।



# ଯୁଦ୍ଧକାଣ୍ଡ

## ଯୁଦ୍ଧକାଣ୍ଡ

ଲଙ୍କାରେ ଆରମ୍ଭ ହୋଇଛି 'ଯୁଦ୍ଧକାଣ୍ଡ' ବା 'ଲଙ୍କାକାଣ୍ଡ ।' ହନୁମାନଙ୍କ ଦ୍ୱାରା ଲଙ୍କା ପୋଡ଼ିଗଲା ପରେ ରାବଣ ଏହାର ପୁନଃନିର୍ମାଣ ପାଇଁ ଆଦେଶ ଦେଇଛି । ସୃଷ୍ଟିକର୍ତ୍ତା ବ୍ରହ୍ମା ଲଙ୍କାଗଡ଼ର ନକ୍ସା ତିଆରି କରିଛନ୍ତି ଏବଂ ସେ ଅନୁଯାୟୀ ସ୍ୱର୍ଗର କାରିଗରମାନେ ଖୁବ୍ ଅଳ୍ପ ସମୟ ମଧ୍ୟରେ ଏହାକୁ ପୁନଃନିର୍ମିତ କରିଛନ୍ତି । ସାମାନ୍ୟ ମାଙ୍କଡ଼ ଦ୍ୱାରା ଲଙ୍କା ଧ୍ୱସ୍ତବିଧ୍ୱସ୍ତ ହେବାଦ୍ୱାରା ରାବଣ ଅସମ୍ମାନିତ ବୋଧ କରିଥିଲା ଏବଂ ପୁନଃନିର୍ମିତ ସହରକୁ ବୁଲି ଦେଖିଥିଲା । ଏହା ପୂର୍ବାପେକ୍ଷା ଅଧିକ ରମଣୀୟ ଦିଶୁଥିଲା । ଏହା ଦେଖି ରାବଣର କ୍ରୋଧର ଉପଶମ ଘଟିଛି ଏବଂ ସେ ଆନନ୍ଦିତ ହୋଇଛି । ନୂତନ ଭାବେ ନିର୍ମିତ ଦରବାର ପ୍ରକୋଷ୍ଠରେ ରାବଣ ଦ୍ୱାରା ଯୁଦ୍ଧକାଳୀନ ସଭାର ଆୟୋଜନ କରାଯାଇଛି ।

## ଯୁଦ୍ଧସଭା

ଗୋଟିଏ ବାନରର ଔଦ୍ଧତ୍ୟ ଫଳରେ ରାବଣର ଯେଉଁ ରାଜକୀୟ ସମ୍ମାନ ନଷ୍ଟ ହେଲା, ସେ ବିଷୟରେ ଭାଷଣ ଦେଲା ରାବଣ । ସଭାଗୃହରେ ଏକ ଭୟାକୁଳ ନିସ୍ତବ୍ଧତା ଖେଳୁଥିଲା । ଜଣେ ପରେ ଜଣେ ସେନାପତି ଯୁଦ୍ଧ ପ୍ରସ୍ତାବ ଦେଇ ଶତ୍ରୁକୁ ଧ୍ୱଂସ କରିଦେବାକୁ ଉପଦେଶ ଦେଇଛନ୍ତି । ଠିକ୍ ଏହି ସମୟରେ ରାବଣର ଭାଇ କୁମ୍ଭକର୍ଣ୍ଣ ସୀତାଙ୍କୁ ଅପହରଣ କରିବା ଅନୁଜ ରାବଣର ଏକ ଅନୈତିକ କାର୍ଯ୍ୟ ବୋଲି ମତବ୍ୟକ୍ତ କରିଛି । ବାଲ୍ମୀକିଙ୍କ କୁମ୍ଭକର୍ଣ୍ଣ ସୀତାଙ୍କୁ ବାଧ୍ୟ କରି ରାବଣର ବିବାହର ସମସ୍ତ ପଥ ପରିଷ୍କାର କରି ଦେବାକୁ ପ୍ରସ୍ତାବ ଦେଇଛି । କମ୍ବନଙ୍କ କୁମ୍ଭକର୍ଣ୍ଣର କିନ୍ତୁ ଭଲ ଓ ମନ୍ଦର ବିଚାରଧାରା ଥିଲା ଯଦିଓ ସେ ଭ୍ରାତୃତ୍ୱ ସ୍ନେହରେ ରାବଣ ପାଇଁ ପ୍ରାଣବଳୀ ଦେବାକୁ ପ୍ରସ୍ତୁତ ଥିଲା ।

ରାବଣର ଅନୁଜ ବିଭୀଷଣ କିନ୍ତୁ ଦୃଶ୍ୟର ବିପରୀତ ପାର୍ଶ୍ୱରେ ଥିଲେ । ତିନି ଭାଇଙ୍କ ମଧ୍ୟରେ ସେ କେବଳ ସବୁଠୁ ଜ୍ଞାନୀ ନ ଥିଲେ, ସେ ଥିଲେ ପୁଣ୍ୟର କର୍ଣ୍ଣଧାର । ପୁଣ୍ୟ ରକ୍ଷା ପାଇଁ ସେ ବଂଶ, ପରିବାର ଓ ଅହଂକୁ ମଧ୍ୟ ଜଳାଞ୍ଜଳି ଦେଇଥିଲେ ।

ସଭାରେ ଦଣ୍ଡାୟମାନ ହୋଇ ସେ ରାବଣଙ୍କୁ କେତେକ ଯଥାର୍ଥ ଓ ସତ୍ୟ କଥା କହିଲେ । 'ବିଶ୍ୱ-ଜନନୀ ସୀତାଙ୍କ ସତୀତ୍ୱ ଦ୍ୱାରା ଲଙ୍କା ଓ ଆପଣଙ୍କ ଗୌରବ ଜଳି ପୋଡ଼ି ଧ୍ୱଂସ ହୋଇ ଯାଉଛି । ଆପଣ କେବେ ଭାବିଛନ୍ତି—କେବଳ ଗୋଟିଏ ବାନର ଏସବୁ କରି ପାରୁଛି ।' ବିଭୀଷଣ ଏହା କହି ସୀତାଙ୍କୁ ତାଙ୍କ ସ୍ୱାମୀଙ୍କୁ ଫେରେଇ ଦେବାକୁ ପରାମର୍ଶ ଦେଇଛନ୍ତି । ବିଭୀଷଣଙ୍କ ଏ ଭାଷଣ ଶୁଣି କୋପାନଳରେ ଜଳି ଉଠିଲା ରାବଣ ଏବଂ ତାର ଅଟ୍ଟହାସ୍ୟରେ ସାରା ସଭାଗୃହ କମ୍ପି ଉଠିଲା । ଏକ ଓଜସ୍ୱିନୀ ବକ୍ତୃତା ମାଧ୍ୟମରେ ବିଭୀଷଣଙ୍କ ଉପରେ ତାର ସମସ୍ତ ଘୃଣା ଢାଳିବାରେ ଲାଗିଲା ରାକ୍ଷସ । କିନ୍ତୁ ସତ୍ୟାନୁବର୍ତ୍ତୀ ବିଭୀଷଣ ରାମ କିପରି ତାଙ୍କ ପୂର୍ବ ଅବତାରରେ ନରସିଂହ ରୂପ ଧାରଣ କରି ହିରଣ୍ୟଙ୍କୁ ଧ୍ୱଂସ କରିଥିଲେ, ତାର ଅବତାରଣା କରିଥିଲେ । ବିଭୀଷଣଙ୍କ ଏସବୁ ଶୁଷ୍କ ଭାଷଣ ଶୁଣି ରାବଣ ଭାବିଲା ଯେ, ବିଭୀଷଣ ରାମଙ୍କ ପକ୍ଷରେ ଯୋଗ ଦେଇଛନ୍ତି । ଏଣୁ ତାଙ୍କୁ ତୁରନ୍ତ ଲଙ୍କା ଛାଡ଼ି ଚାଲିଯିବାକୁ ନିର୍ଦ୍ଦେଶ ଦେଇଛି ରାବଣ ଏବଂ ଯିବାରେ ବିଳମ୍ବ କଲେ ତାଙ୍କୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କରିବାର ଧମକ ଦେଇଛି । ବିଭୀଷଣ ଦୁଃଖରେ ଲଙ୍କା ଛାଡ଼ି ଚାଲିଯିବା ପୂର୍ବରୁ ରାବଣଙ୍କୁ କହିଛନ୍ତି, 'ହେ ଭ୍ରାତା ! ଆପଣଙ୍କ ହିତ ପାଇଁ ଆପଣଙ୍କୁ ଏସବୁ ଉପଦେଶ ଦେଲି, କିନ୍ତୁ ଆପଣ ଏସବୁ କର୍ଣ୍ଣପାତ କଲେ ନାହିଁ । ମୋର ଦୋଷ ପାଇଁ ମୋତେ କ୍ଷମା କରନ୍ତୁ ।'

### ବିଭୀଷଣଙ୍କ ଆତ୍ମସମର୍ପଣ

ଚାରିଜଣ ଉତ୍ତମ ରାକ୍ଷସଙ୍କ ସହ ସମୁଦ୍ର ପାର ହୋଇ ବିଭୀଷଣ ବାନର ସେନାଙ୍କ ଛାଉଣୀରେ ରାମଙ୍କ ନିକଟରେ ପହଞ୍ଚିଲେ । କିଛି ବାନର ଭାବିଲେ ଯେ, ସେମାନଙ୍କ ମଧ୍ୟକୁ ଜଣେ ରାକ୍ଷସ ଗୁପ୍ତଚର ପଶି ଆସିଛି । ବନ୍ଧୁମାନଙ୍କ ସହ ବିଚାର ଆଲୋଚନା କଲେ ରାମ । ହନୁମାନଙ୍କ ବ୍ୟତୀତ ସମସ୍ତେ ବିଭୀଷଣ ଭଳି ଜଣେ ପଳାତକଙ୍କୁ ଗ୍ରହଣ କରିବାକୁ ବାରଣ କଲେ । ବିଭୀଷଣଙ୍କ ବିଚାରବୋଧ, ଅପାର ଅନୁକମ୍ପା ଓ ଆଧ୍ୟାତ୍ମିକ ଗୁଣର ଭୂୟସୀ ପ୍ରଶଂସା କଲେ ହନୁମାନ । ସୁଗ୍ରୀବ ତଥା ଅନ୍ୟାନ୍ୟ ସନ୍ଦେହୀ ଯୋଦ୍ଧାଙ୍କ ଉଦ୍ଦେଶ୍ୟରେ ରାମ କହିଲେ: ହନୁମାନଙ୍କ ପରିଷ୍କାର ଅବବୋଧ ତଥା ତାଙ୍କର ଶବ୍ଦଚୟନ ଅତି ଚମତ୍କାର । ହୁଏତ ଆମେ ବିଜୟଲାଭ କରିବା, କିମ୍ବା ପରାଜୟ ଗ୍ରହଣ କରିବା, ବଞ୍ଚିବା କିମ୍ବା ମୃତ୍ୟୁବରଣ କରିବା—ତେବେ ଆମ ଶରଣରେ ଆସିଥିବା ଆଗନ୍ତୁକଙ୍କୁ ଆମେ ଗ୍ରହଣ କରିବା ଉଚିତ ହେବ । ବିପଦରୁ ରକ୍ଷା ପାଇବା ପାଇଁ ଶରଣ ଭିକ୍ଷା କରୁଥିବା ଲୋକକୁ ମୁଁ ଯେଉଁଦିନ ପ୍ରତ୍ୟାଖ୍ୟାନ କରିବି, ସେଦିନ ହିଁ ହେବ ମୋର ମୃତ୍ୟୁର ଦିନ, ଏବଂ ଯଦି କୌଣସି ଦିନ ସେ ଶରଣାପନ୍ନ ଲୋକର ବିଶ୍ୱାସଘାତକତାରେ ମୋତେ ମୃତ୍ୟୁବରଣ କରିବାକୁ ପଡ଼େ, ତେବେ ସେଦିନଠାରୁ ମୁଁ ଚିରଦିନ ବଞ୍ଚିଯିବି ।' ଏହି ପରିପ୍ରେକ୍ଷୀରେ ରାମଙ୍କ ଦୟାଶୀଳ

ଶରଣାଗତ ଉପରେ ଆଲୋକପାତ କରିବାର ସୁଯୋଗ ଲାଭ କରିଛନ୍ତି କମ୍ବନ । ଏହି ବିସ୍ତୃତିରେ, ଅମାପ କରୁଣାମୟ ଈଶ୍ୱରଙ୍କ ଯେ' ଶରଣାପନ୍ନ ହୁଏ, ସେ ଈଶ୍ୱର ବିନା ଦ୍ୱିଧାରେ ତାକୁ ତାର ପାପରୁ ମୁକ୍ତ ଦେଇଥାନ୍ତି ଏବଂ ତାକୁ ନିଜର 'ଆନନ୍ଦ' ଭିତରକୁ ଟାଣି ଆଣିଥାନ୍ତି ।

ରାମଙ୍କ ନିର୍ଦ୍ଦେଶରେ ବିଭୀଷଣଙ୍କୁ ପାଖେଟି ଆଣିବାକୁ ଯାଇଛନ୍ତି ସୁଗ୍ରୀବ । ପ୍ରଥମ ସାକ୍ଷାତରେ ଉଭୟଙ୍କ ପବିତ୍ର ହୃଦୟ ପରସ୍ପର ସହ ଜଡ଼ିଯାଇଛି । ଚିରଚରିତ ସୃଜନଶୀଳ କବିତାରେ କମ୍ବନ ଲେଖିଛନ୍ତି—ଶ୍ୱେତ ସୁଗ୍ରୀବ ଓ କୃଷ୍ଣ ବିଭୀଷଣ ପରସ୍ପରକୁ ଆଲିଙ୍ଗନ କଲାବେଳେ ମନେହେଉଥିଲା ସତେ ଯେପରି ଦିବସ ଓ ରାତି ଉଭୟ ଉଭୟଙ୍କୁ ଆଲିଙ୍ଗନ କରୁଛନ୍ତି ।

ଚରମ ଭକ୍ତିପୂତ ଚିତ୍ତରେ ରାମଙ୍କ ନିକଟରେ ପହଞ୍ଚିଛନ୍ତି ବିଭୀଷଣ ଏବଂ ରାମଙ୍କ ଅପୂର୍ବ ଲାବଣ୍ୟରେ ବିମୁଗ୍ଧ ହୋଇଯାଇଛନ୍ତି । ଏ ପର୍ଯ୍ୟନ୍ତ ପୁଣ୍ୟକୁ ଏକ ସୂକ୍ଷ୍ମ ନୀତି ବୋଲି ମନେକରୁଥିଲେ ବିଭୀଷଣ, କିନ୍ତୁ ରାମଙ୍କ ଦର୍ଶନ ପରେ ଏହା ଏକ ସ୍ଥୂଳତତ୍ତ୍ୱରେ ପରିବ୍ୟକ୍ତ ବୋଲି ଭାବିଲେ । ବିସ୍ମୟାବିଭୂତ ହୋଇ ସେ ପ୍ରଶ୍ନ କଲେ, 'ପୁଣ୍ୟ କ'ଣ ସତରେ କୃଷ୍ଣ ବର୍ଣ୍ଣ ?' ବିଭୀଷଣଙ୍କ ଏ ଅସୀମ ଭକ୍ତି ଦେଖି ରାମ ତାଙ୍କୁ ସ୍ୱତଃସ୍ଫୂର୍ତ୍ତି ହୋଇ ଭାଇ ବୋଲି ଗ୍ରହଣ କରିନେଲେ । 'ଗୁହଙ୍କୁ ଯୋଗକରି ଆମେ ପଞ୍ଚଭ୍ରାତା ଥିଲୁ' କହିଲେ ରାମ, 'ପରେ ସୁଗ୍ରୀବଙ୍କୁ ନେଇ ଆମେ ହୋଇଥିଲୁ ଛଅ ଏବଂ ଏବେ, ହେ ବନ୍ଧୁ ! ଆପଣଙ୍କୁ ଯୋଗକରି ଆମେ ହେଲେ ସାତ ।' ବିଭୀଷଣଙ୍କୁ ଭାଇ ଭାବେ ରାମ ଗ୍ରହଣ କରିବାରୁ ବାନରସେନା ଅତ୍ୟନ୍ତ ପ୍ରସନ୍ନ ହେଲେ ।

ଇଞ୍ଜିନିୟର୍ ନଳଙ୍କୁ ସମୁଦ୍ରରେ ଲଙ୍କା ପର୍ଯ୍ୟନ୍ତ ସେତୁ ନିର୍ମାଣ କରିବାର କାର୍ଯ୍ୟଭାର ଅର୍ପଣ କରାଗଲା । ସୁଗ୍ରୀବଙ୍କ ନିର୍ଦ୍ଦେଶରେ ବାନର ଯୋଦ୍ଧାମାନେ ବିଭିନ୍ନ ଦିଗକୁ ଯାଇ ବହୁ ଦୂରରୁ ଗୋଟ ଗୋଟ ପାହାଡ଼, ପ୍ରସ୍ତରଖଣ୍ଡ ଓ ଉପଲମାନ ସଂଗ୍ରହ କରି ସେତୁ ନିର୍ମାଣରେ ଲାଗିଗଲେ ।

ଭାରତ ସହ ଲଙ୍କା ବର୍ତ୍ତମାନ ସେତୁଦ୍ୱାରା ସଂଯୁକ୍ତ ହୋଇଗଲା । ନିଜର ସୈନ୍ୟସାମନ୍ତସହ ସେତୁ ପାରହୋଇ ବର୍ତ୍ତମାନ ଲଙ୍କାରେ ପହଞ୍ଚିଲେ ରାମ । ଏହାପରେ ରାବଣଙ୍କୁ ଚରମପତ୍ର ଦେବାଲାଗି ଅଙ୍ଗଦଙ୍କୁ ପଠାଇଲେ । ଅଙ୍ଗଦ ଫେରିଆସି କହିଲେ, 'ରାବଣର ମୁକୁଟଖଚିତ ଶିରକୁ କାଟି ତାକୁ ଶରୀରଠାରୁ ଅଲଗା କରି ନ ଦେଲେ, ସେ ସୀତାଙ୍କୁ ଛାଡ଼ିବ ନାହିଁ ।'

**ଯୁଦ୍ଧ ଆରମ୍ଭ**

ଅପରିହାର୍ଯ୍ୟ ଯୁଦ୍ଧର ଆରମ୍ଭ ପର୍ବ । ରାକ୍ଷସଙ୍କ ସୈନ୍ୟସାମନ୍ତଗଣ ଯୁଦ୍ଧଭୂମିକୁ ମାଡ଼ି ଆସିଲେ । ଏହାସହ ବାନରସେନା ମଧ୍ୟ । ଉଭୟ ସୈନ୍ୟ ଉଭୟଙ୍କ ସମ୍ମୁଖୀନ

ହେବାକୁ ପ୍ରସ୍ତୁତ ହେଲବେଳେ, ସାମ୍ନାରେ ଆବିର୍ଭାବ ହେଲା ରାବଣ । ରାବଣର ରଥ ଚାରିପାଖେ ଘେରି ରହିଛନ୍ତି ବିଶାଳକାୟ ରାକ୍ଷସଗଣ ; ସେମାନଙ୍କ ହାତରେ ଚକ୍‌ଚକ୍ କରୁଛି ଖଡ୍‌ଗ ଏବଂ ସେମାନଙ୍କ ପାଟିରୁ ନିର୍ଗତ ହେଉଛି ରଣ-ହୁଂକାର ।

ରାବଣ ନିଜେ ବ୍ୟକ୍ତିଗତ ଭାବେ ଯୁଦ୍ଧସୀମାକୁ ଆସିଥିବାରୁ ରାମ ଅତୀବ ପ୍ରସନ୍ନ ହେଲେ । ଏହାଫଳରେ ରାବଣକୁ ସମ୍ବୋଧନ କରିବାର ସୁଯୋଗ ପାଇଲେ ରାମ । ସୀତାଙ୍କ ଶୋକରେ ଦୁର୍ବଳ ହୋଇ ପଡ଼ିଥିବା ଶରୀର ଆନନ୍ଦରେ ଫୁଲି ଉଠିଲା ।

ଯୁଦ୍ଧ ଆରମ୍ଭ ହେଲା । ନିଜ ରଥରେ ଠିଆହୋଇ ଯୁଦ୍ଧ କରୁଥିଲା ରାବଣ; କିନ୍ତୁ ହନୁମାନଙ୍କ କାନ୍ଧ ଉପରେ ଠିଆହୋଇ ଯୁଦ୍ଧ କରୁଥିଲେ ରାମ । ରାବଣର ଶରଗୁଡ଼ିକ ରାମଙ୍କ ଶରରେ ଚୂର୍ଣ୍ଣୀଭୂତ ହେଉଥିଲା । ରାମଙ୍କ ଭୟଙ୍କର ଶର ସହି ନପାରି ରାକ୍ଷସ ସୈନ୍ୟଗଣ ରାବଣକୁ ତା ରଥରେ ଏକାକୀ ଛାଡ଼ି ବିଭିନ୍ନ ଦିଗରେ ଦୌଡ଼ିବାକୁ ଆରମ୍ଭ କଲେ । ଖଣ୍ଡା ଭଲି ରାମଙ୍କ ଶର ରାବଣ-ରଥର ଯୋଡ଼-ଘୋଡାମାନଙ୍କରେ ବିଦ୍ଧ ହେଉଥିଲା ଏବଂ ରାବଣର ରଥ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ଯାଉଥିଲା । ଖୋଲା ପଡ଼ିଆରେ ଠିଆହୋଇ ରାକ୍ଷସ ବେଶ୍ ବୀରତ୍ୱର ସହ ଯୁଦ୍ଧ ଅବ୍ୟାହତ ରଖିଥିଲା । ଗୋଟିଏ ଶର ତାର ଧନୁ ଭାଙ୍ଗି ଦେଉଥିଲା ତ ଆଉ କେଉଁଟି ତାର ଖଣ୍ଡା । ତୃତୀୟଟି ତାର ରାଜମୁକୁଟକୁ ବହୁ ଦୂରକୁ ଫିଙ୍ଗିଦେଲା । ଏହା ଥିଲା ରାବଣ ଜୀବନର ବଡ଼ ଗ୍ଲାନିମୟ ମୁହୂର୍ତ୍ତ । ବଡ଼ ଅସହାୟ ଅବସ୍ଥାରେ ଆଖି ତଳକୁ କରି, ଭୂମି ଉପରେ ପାଦ କାମୁଡ଼ି ଠିଆ ହୋଇ ରହିଥିଲା ରାବଣ । ଅବଶ୍ୟ ବରଗଛ ଓହଳ ଯେଉଁପରି ନିଷ୍କ୍ରିୟ ଭାବେ ମାଟିରେ ଓହ୍ଲାଇଥାଏ, ସେହିପରି ରାବଣର ଶୂନ୍ୟ ହାତ ଶୂନ୍ୟରେ ଝୁଲୁଥିଲା ।

ତେବେ ରାବଣର ଅସହାୟତାର ଫାଇଦା ଉଠାଇବାକୁ ଚାହିଁଥିଲେ ରାମ । ଦୟାରେ ତାଙ୍କ ହୃଦୟ ବିଗଳିତ ହୋଇଉଠିଥିଲା, ତାର ଜୀବନ ନ ନେଇ ଛାଡ଼ିଦେଇ ପରଦିନ ସମରକୁ ଆସିବାକୁ କହିଥିଲେ । ରାବଣ ଲଙ୍କାକୁ ଫେରିଗଲା ଏବଂ ଶେଯରେ ଶୋଇ ରହି ତାର ସଙ୍କଟାପନ୍ନ ଦଶା ବିଷୟରେ ଚିନ୍ତା କରିବାକୁ ଲାଗିଲା । ଶତ୍ରୁ ଯେ ତାର ଦୁର୍ଦ୍ଦଶାରେ ହସିବେ—ସେ ବିଷୟରେ ରାବଣ ଚିନ୍ତା କରୁନଥିଲା, କିନ୍ତୁ ବାମ୍ବାଧରୀ ସୀତା ଯେ ତାର ପରାଜୟରେ ହସିବେ, ଏକଥା ଚିନ୍ତା କରି ସେ ଲଜ୍ଜାରେ ମଳିନ ପଡ଼ିଯାଇଥିଲା ।

ଏହାପରେ କୁମ୍ଭକର୍ଣ୍ଣକୁ ଡକେଇଲା ରାବଣ । ତାକୁ ନିଜର ପରାଜୟ ବିଷୟ ଉଲ୍ଲେଖ କରି ଯୁଦ୍ଧକ୍ଷେତ୍ରରେ ଶତ୍ରୁସଂହାର କରିବାକୁ ନିର୍ଦ୍ଦେଶ ଦେଲା । ସୀତାଙ୍କୁ ଛାଡ଼ି ରାମଙ୍କ ନିକଟରେ ଆତ୍ମସମର୍ପଣ କରିବାକୁ ପୁନଶ୍ଚ ପରାମର୍ଶ ଦେଲା କୁମ୍ଭକର୍ଣ୍ଣ । ଏହାଶୁଣି ରାବଣ କ୍ରୋଧରେ ଜଳିଉଠିଲା ଏବଂ ରଥବାହୀ ସୈନ୍ୟମାନଙ୍କୁ ପ୍ରସ୍ତୁତ ହେବାକୁ ନିର୍ଦ୍ଦେଶ ଦେଲା । ସେ ନିଜେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଶତ୍ରୁ

ବିପକ୍ଷରେ ଶେଷପର୍ଯ୍ୟନ୍ତ ଲଢ଼ିବାକୁ ଚାହେଁ ବୋଲି କହିଲା । ଏହା ଦେଖି ନିଜ ଡାହାଣ ହାତରେ ବିଶାଳ ତ୍ରିଶୂଳ ଧରି କୁମ୍ଭକର୍ଣ୍ଣ କହିଲା, 'ଆଉ ଗୋଟିଏ ଶବ୍ଦ ମାତ୍ର, ଏହାପରେ ଶେଷ । ମୋର ଭାଗ୍ୟ ମୋତେ ମୋର ଗଳା ଚିପିଧରି ଆଗକୁ ଯିବାକୁ ଦେଉଛି । ମୁଁ ମରିବାକୁ ପ୍ରସ୍ତୁତ ଏବଂ ଯଦି ମରିଯାଏ, ହେ ଭ୍ରାତା ! ସୀତାଙ୍କୁ ତାଙ୍କ ସ୍ୱାମୀଙ୍କୁ ଫେରେଇ ଦେବ । ଏହା ମଧ୍ୟ ବିଜୟସଦୃଶ ହେବ ।' କୁମ୍ଭକର୍ଣ୍ଣର ବିଦାୟ ବଡ଼ କରୁଣ ଥିଲା । ଶେଷରେ ସେ କହିଲା, 'ହେ ରାଜା ! ମୋ ପାପ ପାଇଁ ମୋତେ କ୍ଷମା କର । ମୋ ଭାଗ୍ୟରେ ଆଉ ଆପଣଙ୍କ ମୁହଁ ଦେଖିବାର ନାହିଁ । ବିଦାୟ ।'

## ଆନୁଗତ୍ୟର ଦ୍ୱନ୍ଦ୍ୱ

କମ୍ବନ ତାଙ୍କ ଅଦ୍ୱିତୀୟ ବର୍ଣ୍ଣନାତ୍ମକ ଶୈଳୀରେ ଆମକୁ ରାମଙ୍କ ସେନାଛାଉଣୀକୁ ନେଇଯାଇଛନ୍ତି ଏବଂ ସେଠାରେ ରାମଙ୍କ ଆଖିରେ ବିଭୀଷଣଙ୍କ ପ୍ରଥମ ଉଦ୍ୟମ ଦେଖିବାର ସୁଯୋଗ ସୃଷ୍ଟି କରିଛନ୍ତି । କୁମ୍ଭକର୍ଣ୍ଣର ରଥ ରଣାଙ୍ଗନରେ ପ୍ରବେଶ କଲାକ୍ଷଣି ବିଭୀଷଣଙ୍କୁ ରାମ କହିଛନ୍ତି, 'ଏହାଙ୍କର ରୂପ ତ ତାର ଅଗ୍ରଜଠାରୁ ବେଶ୍ ଅଧିକ ସୁନ୍ଦର । ସେ କିଏ ହୋଇପାରେ ?' ପ୍ରତିପକ୍ଷର ଶତ୍ରୁଙ୍କ ବ୍ୟକ୍ତିତ୍ୱର ଭୂୟସୀ ପ୍ରଶଂସା କରିଛନ୍ତି ରାମ । ସେ କହିଛନ୍ତି, 'ତାଙ୍କର ଗୋଟିଏ କାନ୍ଧରୁ ଅନ୍ୟ କାନ୍ଧ ପର୍ଯ୍ୟନ୍ତ ଗୋଟିଏ ପଲକରେ ଚାହିଁବାରେ ତ ଅନେକ ଦିନ ବିତିଯିବ ଏବଂ ମଝିରେ ଶରୀର । ତାଙ୍କର ପାଦ କ'ଣ ଗୋଟେ ପର୍ବତ ! ଏହାର ତ କ'ଣ ଯୁଦ୍ଧ କରିବାର ଆଗ୍ରହ ନଥିଲା ଭଳି ଲାଗୁଛି ! ଏ କିଏ ?' କୁମ୍ଭକର୍ଣ୍ଣର ମହାନ୍ ଗୁଣ ବର୍ଣ୍ଣନା କରି ସେ କିପରି ସୀତାଙ୍କୁ ଅପହରଣ କରି ନେଇଥିବାରୁ ରାବଣକୁ ଭର୍ତ୍ସନା କରିଥିଲା, ବିଭୀଷଣ ସେ ବିଷୟରେ ବର୍ଣ୍ଣନା କରିଛନ୍ତି । ଏହା ବ୍ୟତୀତ ରାବଣ ଓ ବିଭୀଷଣଙ୍କ ପ୍ରତି ଥିବା ତାର ସ୍ନେହ ବିଷୟ ଉତ୍ଥାପନ କରିଛନ୍ତି ବିଭୀଷଣ । ଏହା ସବୁ ଶୁଣି ଅତି ପ୍ରସନ୍ନ ହେଲେ ରାମ ଏବଂ କୁମ୍ଭକର୍ଣ୍ଣଙ୍କ ନିକଟକୁ ଯାଇ ତାଙ୍କୁ ରାମଙ୍କ ପକ୍ଷଭୁକ୍ତି ପାଇଁ ଅନୁରୋଧ କରିବାକୁ ବିଭୀଷଣଙ୍କୁ ନିର୍ଦ୍ଦେଶ ଦେଲେ । ରାମଙ୍କ ଆଜ୍ଞାପାଳନ କରି ବିଭୀଷଣ କୁମ୍ଭକର୍ଣ୍ଣର ପାଖକୁ ଯାଇଛନ୍ତି ଓ ତାକୁ ନିଜର ପ୍ରଣିପାତ ଜଣାଇଛନ୍ତି । ବିଭୀଷଣଙ୍କୁ ଆଲିଙ୍ଗନ କରି ଆରମ୍ଭ କରିଛି କୁମ୍ଭକର୍ଣ୍ଣ, 'ମୁଁ ଅତ୍ୟନ୍ତ ଆନନ୍ଦିତ ଯେ, ରାମଙ୍କ ପକ୍ଷଭୁକ୍ତ ହୋଇ ତମେ ଏ ଆସନ୍ନ ଧ୍ୱଂସରୁ ରକ୍ଷା ପାଇଯିବ ଏବଂ ତମେ ଏକମାତ୍ର ଭାଇ ଯେ ନିଶ୍ଚିତ ମୃତ୍ୟୁରୁ ବଞ୍ଚିଯିବ । ତେବେ ବୁଦ୍ଧି, ନିର୍ବୋଧଙ୍କ ପରି ଏ ସେନାଙ୍କ ସହ କାହିଁକି ଯୋଗ ଦେଲ; ଏହା କରି ତମେ ମୋର ସମସ୍ତ ଆଶା ଓ ଭରସାକୁ ଧ୍ୱଂସ କରିଦେଲ । କୃଚ୍ଛ୍ର ସାଧନା କରି ତମେ ତ ନ୍ୟାୟ ଓ ଜ୍ଞାନର ଚରମ ଉପଲବ୍ଧି ପାଇଛ ଓ ମୃତ୍ୟୁଶୂନ୍ୟ ଜୀବନ ହାସଲ କରିପାରିଛ । ତଥାପି, ହେ ମହାତ୍ମା ! ତମେ କିନ୍ତୁ ରାକ୍ଷସବଂଶର ନୀଚତାକୁ କାହିଁକି ଅତିକ୍ରମ କରିପାରିଲନି ? କାହିଁକି କରିପାରିଲନି ?' କୁମ୍ଭକର୍ଣ୍ଣଙ୍କ ଏକ ଭୁଲ ଧାରଣା ଥିଲା ଯେ—ବିଭୀଷଣ ରାମଙ୍କ ପକ୍ଷ

ତ୍ୟାଗ କରି ରାବଣଙ୍କ ପକ୍ଷରେ ନିଜର ପୂର୍ବମତ ପରିବର୍ତ୍ତନ କରିଦେଇଛନ୍ତି । ସେ ପୁନଶ୍ଚ କହିଲେ, 'ସେଠି ସକଳ ପ୍ରାଣୀଙ୍କ ପ୍ରଭୁ ହାତରେ ଧନୁଶର ଧରି ଠିଆହୋଇଛନ୍ତି; ଅନ୍ୟମାନେ ତାଙ୍କ ପଛରେ ଠିଆହୋଇଛନ୍ତି, ମୃତ୍ୟୁ ଓ ଭାଗ୍ୟ ଆମକୁ ହତ୍ୟା କରିବାକୁ ବଦ୍ଧପରିକର; ତମେ ରାମଙ୍କୁ ପରିତ୍ୟାଗ କରି ଗୋଟିଏ ପରାଜିତ ପକ୍ଷକୁ ଆସିଲ କାହିଁକି ?' ବିଭୀଷଣ ଉତ୍ତର ଦେଲେ, 'ବେଦର ଈଶ୍ବର ସ୍ୱୟଂ ଏକ ସ୍ନେହଶୀଳ ଅନୁରୋଧ ସହ ମୋତେ ଆପଣଙ୍କ ନିକଟକୁ ପ୍ରେରଣ କରିଛନ୍ତି । ହେ ଭ୍ରାତା ! ଆପଣ ତ କେବେହେଲେ ପୁଣ୍ୟ ସହ ସାଲିସ କରନ୍ତି ନାହିଁ । ଏଣୁ ଆପଣ ମୋ ସହ ଆସି ରାମଙ୍କ ପକ୍ଷଭୁକ୍ତ ହୁଅନ୍ତୁ ।' ଏହା କହି କୁମ୍ଭକର୍ଣ୍ଣର ପାଦ ତଳେ ପ୍ରଣାମ କରି ତାଙ୍କୁ ପକ୍ଷ ପରିବର୍ତ୍ତନ କରିବାକୁ ପ୍ରାର୍ଥନା କରନ୍ତି ବିଭୀଷଣ । କୁମ୍ଭକର୍ଣ୍ଣ ଜାଣିଥିଲି ଯେ—ବିଭୀଷଣ ପରି ସେ କେବେହେଲେ ମୂଲ୍ୟବୋଧର ଶୀର୍ଷତମ ସ୍ତରରେ ନିଜକୁ ଅଧିଷ୍ଠିତ କରିପାରିବ ନାହିଁ । ନିମ୍ନସ୍ତରରେ ରହି ହଠାତ୍ ଉଚ୍ଚତମ ଆଦର୍ଶ ଅନ୍ୱେଷଣ କରି ରାବଣଙ୍କୁ ପରିତ୍ୟାଗ କରିବା ତା ପକ୍ଷରେ ଉଚିତ ହେବ ନାହିଁ । ଏହି ସମୟରେ ବିଭୀଷଣଙ୍କ ଉଚ୍ଚତମ ଆଦର୍ଶ ଏବଂ ଲକ୍ଷ୍ମଣଙ୍କ ସାଧୁତା ବିଷୟରେ ବେଶ୍ ଉପଲବ୍ଧି କରି ପାରୁଥିଲି କୁମ୍ଭକର୍ଣ୍ଣ । ସୁତରାଂ ପୁଣ୍ୟ ପ୍ରତିପାଦନ ପାଇଁ ରାବଣ ବିରୁଦ୍ଧରେ ସଂଗ୍ରାମ କରିବା ତା ପକ୍ଷରେ ଉଚିତ କାମ ହେବ ନାହିଁ ।

ରାବଣର ମହତ ଗୁଣ ବିଷୟରେ ସଙ୍ଗୀତ ଗାନ କରିଛି କୁମ୍ଭକର୍ଣ୍ଣ । ସେଗୁଡ଼ିକ ସ୍ମରଣ କରି ସେ ଗାଇଛି—

> ସେ ତ ମହା ବଳୀୟାନ୍, ଅଦ୍ୱିତୀୟ, ଶଳ୍ପ୍ରାଣ ବୀର
> ଯିଏ କାନ୍ଧେ ଟେକିଥିଲେ କୈଳାସ ପର୍ବତ
> ଏବେ କ'ଣ ସେଇ କାନ୍ଧେ ବନ୍ଧା ହେବ ଯମଙ୍କର ଫାଶ
> ପରାଜିତ ବୀର ଯିବ ଏକା ଏକା ଯମଙ୍କ ନିବାସ ।

ଆନୁଗତ୍ୟର ଦ୍ୱନ୍ଦ୍ୱ ଭିତରେ ପଡ଼ିଛି କୁମ୍ଭକର୍ଣ୍ଣ । ବିଭୀଷଣଙ୍କୁ ସେ ଯେତିକି ଶ୍ରଦ୍ଧା କରେ, ସେତିକି ସ୍ନେହ କରେ ରାବଣଙ୍କୁ । ବିଭୀଷଣଙ୍କ କୁଶଳ ବି ତାର କାମ୍ୟ । ତାଙ୍କୁ ସେ କହିଛି, 'ଆଉ ମୁହୂର୍ତ୍ତିଟିଏ ଅଟକ ଯାଅନି । ରାମଙ୍କ ନିକଟକୁ ଫେରିଯାଇ ତାଙ୍କ ବନ୍ଧୁତ୍ୱ ଜିଜ୍ଞାସା କର । ଯେତେବେଳେ ଯାହା ଘଟିବାର ଥିବ, ତାହା ହିଁ ଘଟିବାକୁ ଥିବା ସମୟରେ ଘଟିବ । ଧ୍ୱଂସ ପାଇବାକୁ ଯଦି ଭାଗ୍ୟରେ ଲେଖାଥିବ, ଯେତେ ଚେଷ୍ଟା କଲେ ବି ସେଥିରୁ ମୁକ୍ତ ପାଇ ହେବନି । ତମଠାରୁ ଏ ଚରମ ଜ୍ଞାନ ବା ଆଉ କାହାର ଅଧିକ ଅଛି ? ଅନୁତାପ ନକରି ଫେରିଯାଅ । ହେ ଅମର ବିଭୀଷଣ ! ଆମ ଉପରେ ଦୟା କର ନାହିଁ ।' ଏହା କହି ବାହୁ ଭିତରେ ଭିଡ଼ି ଧରି ବିଭୀଷଣଙ୍କୁ ଆଲିଙ୍ଗନ କରିଛି କୁମ୍ଭକର୍ଣ୍ଣ; ସେହିପରି ସେ ଠିଆହୋଇ ରହିଥିଲେ,

ଦୀର୍ଘଶ୍ୱାସ ପରେ ଦୀର୍ଘଶ୍ୱାସ ହିଁ ନେଉଥିଲେ ଏବଂ ଶେଷରେ ଦୀର୍ଘ ସମୟ ଧରି ପୂର୍ଣ୍ଣ ପଲକହୀନ ଆଖିରେ ଚାହିଁ ରହି କହିଲା, 'ଆଜି ହିଁ ଆମ ଭ୍ରାତୃତ୍ୱର ବନ୍ଧନ ଛିନ୍ନ ହୋଇଯିବ ।' କୁମ୍ଭକର୍ଣ୍ଣର ଏସବୁ କଥା ଶୁଣି ବିଭୀଷଣ ତାଙ୍କ ଚରଣ ସ୍ପର୍ଶ କଲେ ଏବଂ ତାଙ୍କର ମନେହେଲା ଯେପରି ତାଙ୍କର ଶରୀର ସହ ଆତ୍ମା ମଧ୍ୟ ଅବଶ ହୋଇ ଆସୁଛି । ତେବେ ଏ ବିଷୟରେ ଆଉ ଅଧିକ ବାକ୍ୟାଳାପ ଫଳପ୍ରଦ ହେବନି ଭାବି ବିଭୀଷଣ ସେ ସ୍ଥାନ ପରିତ୍ୟାଗ କଲେ । ରାକ୍ଷସ ଯୋଦ୍ଧାମାନେ ତାଙ୍କୁ ପ୍ରଣାମ କରିଛନ୍ତି । ଏଠି ଉଲ୍ଲେଖ କରାଯାଇପାରେ ଯେ, ବାଲ୍ମୀକିଙ୍କ ରାମାୟଣରେ ଦୁଇ ଭାଇଙ୍କ ମଧ୍ୟରେ ସାକ୍ଷାତ ଆଲୋଚନା ହୋଇନାହିଁ । କମ୍ବନ କିନ୍ତୁ ନିଜର ସୃଜନଶକ୍ତି ସହ ଉଦ୍ଭାବନକ୍ଷମ ନାଟକୀୟତାକୁ ମିଶ୍ରଣ କରି ଉଭୟଙ୍କ ସାକ୍ଷାତକୁ ଏକ ଅପୂର୍ବ ଶୈଳୀରେ ପ୍ରକାଶ କରିଛନ୍ତି ।

ରାମଙ୍କ ଛାଉଣୀରେ ପହଞ୍ଚି ବିଭୀଷଣ କୁମ୍ଭକର୍ଣ୍ଣ ଓ ତାଙ୍କ ମଧ୍ୟରେ ଘଟିଥିବା ବିଷୟ ବର୍ଣ୍ଣନା କରିଛନ୍ତି । ଘଟଣା ପ୍ରବାହର ନିଷ୍ପତ୍ତିକୁ ଅପେକ୍ଷମାଣ ରାମ ଲକ୍ଷ୍ମଣଙ୍କୁ କୁମ୍ଭକର୍ଣ୍ଣଙ୍କ ସହ ଯୁଦ୍ଧ ଆରମ୍ଭ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ।

## କୁମ୍ଭକର୍ଣ୍ଣର ଶେଷ ଇଚ୍ଛା

ଦୁଇ ପରମ ବୀରଙ୍କ ସମର ଦେଖିବା ଲାଗି ହଜାର ହଜାର ଦର୍ଶକ ଜମା ହୋଇ ଯାଇଥିଲେ । କୁମ୍ଭକର୍ଣ୍ଣଙ୍କ ଯୁଦ୍ଧରେ କୌଣସି ଆଦର୍ଶ ନଥିଲା । ତାଙ୍କର କର୍ତ୍ତବ୍ୟ ଥିଲା ଯୁଦ୍ଧ ଓ ମୃତ୍ୟୁ । କିନ୍ତୁ ଲକ୍ଷ୍ମଣ ଏକ ଉଚ୍ଚ ଆଦର୍ଶ ଦ୍ୱାରା ଅନୁପ୍ରାଣିତ ହୋଇ ଅତୀବ ବୀରୋଚିତ ଶୈଳୀରେ ଲଢୁଥିଲେ । ପ୍ରାଥମିକ ଅବସ୍ଥାରେ ଶାଣିତ ବୁଦ୍ଧି, ବ୍ୟଙ୍ଗ ଓ ବକ୍ରୋକ୍ତି ବିନିମୟ ହୋଇଥିଲା ଏବଂ ପରେ ଏକ ଭୟଙ୍କର ସମରର ସୂତ୍ରପାତ ହୋଇଥିଲା । ଜଣେ ଅନ୍ୟ ଜଣକୁ ଅତିକ୍ରମି ଯିବାର ଜଣାପଡୁଥିଲା ଏବଂ ଉଭୟେ ଅବଶ ହୋଇଯାଉଥିଲେ । ପରିଶେଷରେ, ରାମ ଉଭୟଙ୍କ ସମର ମଧ୍ୟରେ ପ୍ରବେଶ କରି କୁମ୍ଭକର୍ଣ୍ଣଙ୍କ ସୈନ୍ୟମାନଙ୍କୁ ପୂରାପୂରି ପରାସ୍ତ କରିଦେଲେ ଏବଂ କୁମ୍ଭକର୍ଣ୍ଣଙ୍କ ଶରୀରକୁ ଶରରେ ଆଚ୍ଛାଦିତ କରିଦେଲେ । ସିନ୍ଦୂର ରଙ୍ଗର ରୁଧିରର ଧାର ରଣାଙ୍ଗନରେ ବହିଗଲା ଏବଂ ସେ ରକ୍ତରେ କୁମ୍ଭକର୍ଣ୍ଣଙ୍କ ରଥବାହିନୀ, ହସ୍ତୀବାହିନୀ, ଅଶ୍ୱାରୋହୀ ଓ ପଦାତିକ ସୈନ୍ୟସାମନ୍ତ ବୁଡ଼ିଗଲେ । ଅନୁପମ ରାମ ବର୍ତ୍ତମାନ ନିଜର ତୂଣୀର ଧରି କୁମ୍ଭକର୍ଣ୍ଣର ସାମ୍ନାରେ ପହଞ୍ଚିଲେ । ଛେଦିତ ଅଙ୍ଗହୀନ ହୋଇ ପଡ଼ିଥିଲା କୁମ୍ଭକର୍ଣ୍ଣ । ବିଭୀଷଣଙ୍କ ହିତରେ ରାମଙ୍କୁ ସମ୍ବୋଧନ କରି କୁମ୍ଭକର୍ଣ୍ଣ କହିଲା, 'ମୋର ଅନୁଜ ବ୍ୟାପକ ନ୍ୟାୟ ବିଚାରରେ ନିଜକୁ ସ୍ଥାପିତ କରିଛନ୍ତି; ତାଙ୍କର ଏ ବିଚାର ଚିରନ୍ତନ ନ୍ୟାୟରୁ ଜନ୍ମଲାଭ କରିଛି । ସେ ମିଛ ଜାତି ଓ ବଂଶ ବିଷୟରେ ଅନଭିଜ୍ଞ । ହେ ଈଶ୍ୱର ! ଆପଣ ତ ରାଜାଙ୍କ ଶରୀର ଧାରଣ କରି ଏ ମର୍ତ୍ତ୍ୟମଣ୍ଡଳରେ ଅବତୀର୍ଣ୍ଣ ହୋଇଛନ୍ତି ।

ସେ ଆପଣଙ୍କର ଶରଣାପନ୍ନ ହୋଇଛନ୍ତି ଏବଂ ଆପଣଙ୍କୁ ଅନୁରୋଧ, ତାଙ୍କୁ ଆଶ୍ରୟ ପ୍ରଦାନ କରିବେ ।' 'କିନ୍ତୁ ରାବଣ ତାଙ୍କୁ ଆଶ୍ରୟ ଦେଲେ ନାହିଁ, ଯଦିଓ ସେ ତାଙ୍କର ଅନୁଜ । ତାଙ୍କୁ ଦେଖିଲା ମାତ୍ରେ ସେ ନିଶ୍ଚୟ ହତ୍ୟା କରିବେ । ମୁଁ ପ୍ରାର୍ଥନା କରୁଛି, ଯୁଦ୍ଧ ଚାଲୁ ରହିଥିବାଯାଏଁ, ସେ ଆପଣଙ୍କର ତଥା ଆପଣଙ୍କର ଅନୁଜ ଓ ହନୁମାନଙ୍କ କୃପାଛାୟା ତଳେ ରହିଥିବେ ।' ରାମ କୁମ୍ଭକର୍ଣ୍ଣଙ୍କୁ ତଥାସ୍ତୁ କହିଲେ ଏବଂ କୁମ୍ଭକର୍ଣ୍ଣ ଇହଧାମ ତ୍ୟାଗ କଲା । କମ୍ବନଙ୍କ ରଚନାରେ କୁମ୍ଭକର୍ଣ୍ଣ ଥିଲା ଏକ ଅନବଦ୍ୟ ସୃଷ୍ଟି । ତାର ଥିଲା ପରମ ବୀରତ୍ୱ ଓ ସେ ନ୍ୟାୟ ବିଗ୍ରହରେ ଥିଲା ଏକ ଅଦ୍ୱିତୀୟ ପ୍ରତିଭା । ହୃଦୟର କୋମଳତା ଥିଲା ତାର ବ୍ୟକ୍ତିତ୍ୱର ଆଭୂଷଣ । କମ୍ବନଙ୍କ କୁମ୍ଭକର୍ଣ୍ଣ ଥିଲା ବାଲ୍ମୀକିଙ୍କ ଅଦ୍ଭୁତ କୁମ୍ଭକର୍ଣ୍ଣଠାରୁ ସ୍ୱତନ୍ତ୍ର । ସମସ୍ତ ପ୍ରଶଂସାରେ ଆମେ ବିଭୀଷଣଙ୍କୁ ବୁଡ଼େଇ ଦେଲାବେଳେ, କୁମ୍ଭକର୍ଣ୍ଣଙ୍କ ପ୍ରତି ଆମ ଆଖିରୁ ଲୁହ ଝରି ଆସେ ।

ରାବଣର ଶୋକ

କୁମ୍ଭକର୍ଣ୍ଣର ମୃତ୍ୟୁ ସମ୍ବାଦ ଶୁଣି ରାବଣ ମର୍ମାହତ ହୋଇ ପଡ଼ିଛି । ଧାନ୍ୟମାଳିନୀ ଗର୍ଭରୁ ଜାତ ତାର ପୁତ୍ର ଅତିକାୟ ଏହାର ପ୍ରତିଶୋଧ ନେବା ଲାଗି ଯୁଦ୍ଧ କ୍ଷେତ୍ରରେ ପହଞ୍ଚିଛି । ବିଶାଳ ସୈନ୍ୟବାହିନୀ ତାର ଅନୁଧାବନ କରିଛନ୍ତି । ସେଦିନର ଯୁଦ୍ଧରେ ଅତିକାୟର ଶିରଚ୍ଛେଦନ କରିଛନ୍ତି ଲକ୍ଷ୍ମଣ ।

ରାବଣର ଚରମାନେ ତାକୁ ଅସମ୍ମାନଜନକ ପରାଜୟର ଖବର ଦେଇଛନ୍ତି । ଅତିକାୟର ମୃତ୍ୟୁରେ ରାବଣର ମତିଭ୍ରମ ଘଟିଛି ଏବଂ ସେ ମସ୍ତିଷ୍କର ଭାରସାମ୍ୟ ହରେଇଛି ।

ନିଃଶ୍ୱାସେ ଊର୍ଦ୍ଧ୍ୱମୁଖୀ ଶିର
ଲଜ୍ଜାରେ ହୁଏ ଅବନତ
ମୃତ୍ୟୁର ବାର୍ତ୍ତା ଶୁଣି କର୍ଣ୍ଣେ
ଉଠିଲା ଅପୂର୍ବ ସାହସେ
କ୍ରୋଧରେ ମନ ଜର୍ଜରିତ
ଶୋକରେ ଭାଙ୍ଗେ ତା ହୃଦୟ
ନୟନୁ ବହେ ଅଶ୍ରୁ ଧାର
ଲୋତକ ପାଲଟେ ସାଗର
ଲୁହର ଢେଉ ଉଠେ ଉଚ୍ଚ
ମାଡ଼ି ଚାଲଇ ଥଳକୂଳ
କେବେ ସେ ଫେରେ ଅନ୍ତର୍ଭାଗ
ତିଅାଁଇ ଅସୀମ ସାଗର

ଭାବେ ସେ ଉପାଡ଼ିବ ପୃଥ୍ୱୀ
ସ୍ୱର୍ଗକୁ ଫିଙ୍ଗିବ କାଢ଼ି
ଗୋଇଠା ପ୍ରହାର ମାରିବ
ସଂସାରେ ଛନ୍ତି ଯେତେ ଜୀବ
ଦେବ ସେ ଖଣ୍ଡ ଖଣ୍ଡ କରି
ସଂସାରେ ଯା'ର ନାମ 'ନାରୀ' ।

ଗଭୀର ଶୋକ

ରାବଣର କ୍ରୋଧ ଦେଖି ତାର ଚତୁଃପାର୍ଶ୍ୱରେ ଥିବା ସମସ୍ତେ ଭୟଭୀତ ହୋଇପଡ଼ିଛନ୍ତି । ଏହି ସଙ୍କଟ ସମୟରେ ଉପସ୍ଥିତ ହୋଇଛନ୍ତି ତାର ପତ୍ନୀ ବନମାଳି । କଳ୍ପନ ତାଙ୍କର ଚିର ନାଟକୀୟ ବିଚାରଧାରା ଏବଂ ଶ୍ରେଷ୍ଠ ମନସ୍ତାତ୍ତ୍ୱିକ ଜ୍ଞାନ ପ୍ରୟୋଗ କରି ଏ ଦୃଶ୍ୟର ଚିତ୍ରଣ କରିଛନ୍ତି । ଧାନ୍ୟମାଳିନୀ ହେଉଛନ୍ତି ରାବଣର ପତ୍ନୀ ଓ ମୃତ ପୁତ୍ର ଅତିକାୟଙ୍କ ଜନନୀ । ପୁତ୍ରଶୋକରେ ଅଧୀରା ଜନନୀଙ୍କ ଅଭିଯୋଗ ଶୁଣି ରାବଣ ପ୍ରତିରକ୍ଷାର ସମସ୍ତ ସୁଯୋଗ ନେଇଛି । ରାଣୀ ବନମାଳି ଉଚ୍ଚବଂଶସମ୍ଭୂତା ଏବଂ ରାଜକୀୟ ପରମ୍ପରାରେ ପାଳିତା । ଏପରିକି ରାବଣ ମଧ୍ୟ ଅତି ବିନୀତ ଭାବେ ତାଙ୍କ ସହ ବ୍ୟବହାର କରିଥାଏ । ମୁଣ୍ଡ କାଢ଼ି, ହାତରେ ଗୁଡ଼ି ପିଟି ପ୍ରବେଶ କରିଛନ୍ତି ବନମାଳି ।

ରାବଣର ପାଦତଳେ ପଡ଼ି ରୋଦନ୍ କରିଛନ୍ତି—

ଶୁଣିବ କି ଅରେ ମାତ୍ର ହେ ନାଥ ବଚନ ?
ଶୁଣିବ କି ଅରେ ମୋର ଶୋକଦଗ୍ଧ ଗିର ?
ଦେଖେଇ ପାରିବ ଅରେ
ମୋ ପ୍ରିୟ ତନୟ
ନୟନ ପିତୁଳା ସେ ତ
ମୋ ଜୀବନ ଧନ ।

ଗଭୀର ଶୋକରେ ରାବଣ ନୀରବ ନିଥର ହୋଇଯାଇଛି । ସୀତାଙ୍କ ପ୍ରତି ରାବଣର କାମୁକତାକୁ ଧିକ୍‌କାର କରି ତାକୁ ସତର୍କ କରି କହିଛନ୍ତି, 'ସୀତାଙ୍କ ପାଇଁ ତମକୁ ଅନେକ ଅନେକ କଷ୍ଟ ସ୍ୱୀକାର କରିବାକୁ ପଡ଼ିବ !' ଏହିପରି ରୋଦନ କରୁଥିଲା ବେଳେ ନୃତ୍ୟରତା ସ୍ୱର୍ଗର ଅପ୍‌ସରୀ ଉର୍ବଶୀ ଓ ମେନକା ବନମାଳିଙ୍କ ହାତ ଧରି ଅନ୍ତଃପୁରକୁ ନେଇଯାଇଛନ୍ତି ।

ରାବଣ ଏହାପରେ ତାର ପୁତ୍ର ବୀରଶ୍ରେଷ୍ଠ ଇନ୍ଦ୍ରଜିତକୁ ଯୁଦ୍ଧକ୍ଷେତ୍ରକୁ ପଠେଇଚି । ଇନ୍ଦ୍ରଜିତ ବ୍ରହ୍ମାସ୍ତ୍ର ବ୍ୟବହାର କରିଛି । ବ୍ରହ୍ମାସ୍ତ୍ର ହେଉଛି ଏପରି ଏକ ରହସ୍ୟମୟ କ୍ଷେପଣାସ୍ତ୍ର, ଯାହା ଶତ୍ରୁ ବିପକ୍ଷରେ ବିଷାକ୍ତ ବାଷ୍ପ ନିର୍ଗତ କରି ପରିଶେଷରେ ପ୍ରେରକ ନିକଟକୁ ଫେରିଆସେ । ରାମ, ଲକ୍ଷ୍ମଣ ଏବଂ ତାଙ୍କ ସୈନ୍ୟସାମନ୍ତ ଗଭୀର ନିଦ୍ରାରେ ଶୋଇଥିଲେ ବେଳେ ଇନ୍ଦ୍ରଜିତ୍ ଏ ଅସ୍ତ୍ରର ପ୍ରୟୋଗ କରିଛି । ବିଷାକ୍ତ ବାଷ୍ପ ସେମାନଙ୍କୁ ସମସ୍ତଙ୍କୁ ଅଚେତ କରି ଦେଇଛି ଏବଂ ମୃତଲୋକଙ୍କ ପରି ସେମାନେ ସବୁ ପଡ଼ିରହିଛନ୍ତି । ଅତି ପ୍ରସନ୍ନ ହୋଇ ଇନ୍ଦ୍ରଜିତ ରାଜପ୍ରାସାଦକୁ ଫେରି ଆସିଛି ଓ ଶୟନକକ୍ଷରେ ପ୍ରବେଶ କରିଛି ।

ଜାମ୍ବବାନଙ୍କ ନିର୍ଦ୍ଦେଶରେ ହନୁମାନ ସଞ୍ଜୀବୀ ପର୍ବତକୁ ଯାଇଛନ୍ତି ଏବଂ ତାକୁ ମୂଳୋତ୍ପାଟନ କରି ନେଇଆସିଛନ୍ତି । ସେଇ ପର୍ବତର ଏକ ଗୁଳ୍ମ ଆଘ୍ରାଣ କରି ରାମ, ଲକ୍ଷ୍ମଣ ଓ ତାଙ୍କର ସମସ୍ତ ସେନା ସଂଜ୍ଞା ଫେରିପାଇଛନ୍ତି । ରାମ ନିଦ୍ରାରୁ ଉଠି ବିଭୀଷଣଙ୍କ ଉଦ୍‌ଗ୍ରୀବ ମୁହଁକୁ ଚାହିଁଛନ୍ତି ଏବଂ କ'ଣ ଘଟିଛି ବୋଲି ପ୍ରଶ୍ନ କରିଛନ୍ତି । ହନୁମାନଙ୍କ ପ୍ରଚେଷ୍ଟାରେ ରାମ, ଲକ୍ଷ୍ମଣ ଓ ସେନାବାହିନୀ କିପରି ଜୀବନ ଫେରି ପାଇଛନ୍ତି, ସେ ବିଷୟ ବର୍ଣ୍ଣନା କରିଛନ୍ତି ବିଭୀଷଣ । ତତ୍‌କ୍ଷଣାତ୍, କୃତଜ୍ଞତା ପ୍ରକାଶ କରିବା ପୂର୍ବକ ରାମ ହନୁମାନଙ୍କୁ ଆଲିଙ୍ଗନ କରିଛନ୍ତି ।

## ପୁଣ୍ୟର ଜୟ

ପରଦିନ ଇନ୍ଦ୍ରଜିତ ତାର କୌଶଳ ପରାସ୍ତ ହୋଇଛି ବୋଲି ଜାଣିବାକୁ ପାଇଛି । ରାବଣ ଦ୍ୱାରା ଅନୁପ୍ରେରିତ ହୋଇ ସେ ପୁନଶ୍ଚ ଏକ ଭୟଙ୍କର ଯୁଦ୍ଧ କରିଛି । ଲକ୍ଷ୍ମଣ ତାଙ୍କର ଅର୍ଦ୍ଧଚନ୍ଦ୍ରପରାୟ ଶରରେ ଇନ୍ଦ୍ରଜିତର ଶିରଚ୍ଛେଦନ କରିଛନ୍ତି । ଇନ୍ଦ୍ରଜିତର ମୃତ୍ୟୁ ଖବର ରାବଣର ହୃଦୟକୁ ଦଗ୍‌ଧୀଭୂତ କରିଛି ।

ସମସ୍ତ ବିପର୍ଯ୍ୟୟର ମୂଳ କାରଣ ସୀତା ବୋଲି ଭାବିଛି ରାବଣ । କ୍ରୋଧରେ ଅନ୍ଧ ହୋଇ ସୀତାଙ୍କୁ ହତ୍ୟା କରିବା ଉଦ୍ଦେଶ୍ୟରେ ସେ ଅଶୋକ ବନଆଡ଼କୁ ଦୌଡ଼ିଛି । ମନ୍ଦୋଦରୀ ତାର ପଥ ଓଗାଳି କହିଛନ୍ତି, ଯଦି ସେ ସୀତାଙ୍କୁ ହତ୍ୟା କରନ୍ତି ତା'ହେଲେ ଚିରଦିନ ଲାଗି ତାଙ୍କ ନାଆଁରେ କଳଙ୍କ ଲାଗିଯିବ । ଏହି ବାତୁଳ କାର୍ଯ୍ୟରୁ ନିବୃତ୍ତ କରିବା ଲାଗି ମନ୍ଦୋଦରୀ ରାବଣର ବୀରତ୍ୱ ଓ ଖ୍ୟାତି ବିଷୟ ଉଲ୍ଲେଖ କରିଛନ୍ତି ।

ରାବଣର ଶୋକର ଉଚ୍ଛ୍ୱାସ ଏବେ ଯୁଦ୍ଧ ହୁଙ୍କାରରେ ପରିଣତ ହେଲା । ଯୁଦ୍ଧକ୍ଷେତ୍ରରେ ଅପୂର୍ବ ବୀରତ୍ୱ ସହ ସେ ରାମଙ୍କ ସହ ଲଢ଼ିବାକୁ ଲାଗିଲା । ରାମଙ୍କ ଶର ତାର ମୁଣ୍ଡକୁ ଅଲଗା କରି ଭୂମି ଉପରେ ଫିଙ୍ଗି ଦେଲା । ରାମଙ୍କ ବୀରତ୍ୱ ଓ ପୁଣ୍ୟର ବିଜୟ

ପ୍ରାପ୍ତି ହେଲା । ସୀତାଙ୍କୁ ବନ୍ଦିତ୍ୱରୁ ଉଦ୍ଧାର କରାଗଲା । ମୃତ ରାକ୍ଷସମାନଙ୍କ ଶେଷକୃତ୍ୟ ସମାପନ କଲେ ବିଭୀଷଣ ।

ବିଜୟୀ ଯୋଦ୍ଧାମାନେ ଅଯୋଧ୍ୟା ଅଭିମୁଖେ ଯାତ୍ରା ଆରମ୍ଭ କଲେ । ସେମାନଙ୍କ ସହ ଥିଲେ ବିଭୀଷଣ, ସୁଗ୍ରୀବ ଓ ହନୁମାନ ।

**ଶତ୍ରୁଘ୍ନଙ୍କ ଏକକ ବକ୍ତବ୍ୟ**

ଦୀର୍ଘ ଚଉଦ ବର୍ଷ କାଳ ରାଜପ୍ରତିନିଧି ଭାବେ ରାଜ୍ୟଭାର ଗ୍ରହଣ କରିଥିବା ଭରତ ପ୍ରତ୍ୟେକ ଦିନ ରାମଙ୍କ ପ୍ରତ୍ୟାବର୍ତ୍ତନ ପାଇଁ ଦକ୍ଷିଣଦିଗକୁ ଚାହିଁ ରହିଥାନ୍ତି । ଆଜି ହିଁ ଚଉଦ ବର୍ଷର ଅବସାନ ହେବ । ଏକ ଦୁର୍ଗ ଉପରେ ଚଢ଼ି ଭରତ ଦକ୍ଷିଣ ଦିଗକୁ ଚାହିଁଲେ, କିନ୍ତୁ ରାମଙ୍କ ଆସିବାର କୌଣସି ସୂଚନା ପାଇଲେ ନାହିଁ । ଅତ୍ୟନ୍ତ ନୈରାଶ୍ୟ ଭିତରେ ଅଗ୍ନିକୁ ଡେଇଁ ପ୍ରାଣତ୍ୟାଗ କରିବାର ଯେଉଁ ଶପଥ କରିଥିଲେ, ତାକୁ ପୂର୍ଣ୍ଣ କରିବାକୁ ଭାବିଲେ ମନରେ । ତାଙ୍କ ନିର୍ଦ୍ଦେଶରେ ଅଗ୍ନି ପ୍ରଜ୍ୱଳିତ କରାଗଲା । ନଗରବାସୀ ଓ ଋଷିମାନଙ୍କୁ ଡାକି ଭରତ କହିଲେ ଯେ—ନିର୍ଦ୍ଦିଷ୍ଟ ସମୟ ଅତିକ୍ରମ କରିଗଲେ, ସେ ମୁହୂର୍ତ୍ତିଟିଏ ବି ବଞ୍ଚିବେ ନାହିଁ । ସେମାନେ ଭରତଙ୍କୁ ବହୁ ଅନୁରୋଧ କଲେ, କିନ୍ତୁ ତାହା ବିଫଳ ହେଲା । ଠିକ୍ ଏହି ସମୟରେ ଅନୁଜ ଶତ୍ରୁଘ୍ନ ସେଠାରେ ଉପସ୍ଥିତ ହେଲେ । ଭରତ କହିଲେ, 'ଆଜି ହେଉଛି ସେହି ନିର୍ଦ୍ଦିଷ୍ଟ ଦିନ ଏବଂ ରାମ ଏପର୍ଯ୍ୟନ୍ତ ଆସି ନାହାନ୍ତି । ନିଜ ଦେହରେ ଅଗ୍ନି ସଂଯୋଗ ପୂର୍ବରୁ ମୁଁ ତମକୁ ଏକ ଅନୁରୋଧ କରୁଛି । ତମେ ରାମ ଆସିବା ପର୍ଯ୍ୟନ୍ତ ଏ ରାଜ୍ୟରେ ରାଜତ୍ୱ କରିବ ଏବଂ ସେ ଆସିବା ପରେ ତାଙ୍କୁ ଏ ଭାର ସମର୍ପଣ କରିବ ।'

ଭରତଙ୍କ ମର୍ମସ୍ପର୍ଶୀ ବଚନ ଶୁଣି ଶତ୍ରୁଘ୍ନ ନିଜକୁ ବଡ଼ ତୁଚ୍ଛ ମଣିଲେ । କମ୍ବନ ରାମାୟଣରେ ସେ ଜଣେ ନୀରବ ଚରିତ୍ର ଭାବେ ଚିତ୍ରିତ ହୋଇଛନ୍ତି—ସମଗ୍ର ପୁରାଣରେ ସେ ଅଳ୍ପଟିଏ ମାତ୍ର କଥା କହିଛନ୍ତି । ତାଙ୍କର ବକ୍ତବ୍ୟରେ କମ୍ବନ ଛନ୍ଦପୂର୍ଣ୍ଣ ଲାଳିତ୍ୟ ଭର୍ତ୍ତି କରିଛନ୍ତି । ତାଙ୍କ ବକ୍ତବ୍ୟର କୋମଳ ଲାଳିତ୍ୟକୁ ଅନୁବାଦରେ ପ୍ରକାଶ କରିବା କଷ୍ଟ ହେତୁ, ତାର କେବଳ ପ୍ରଜ୍ଞାଦୀପ୍ତ ବିଷୟବସ୍ତୁର ଗଦ୍ୟାତ୍ମକ ଅବତାରଣା କରାଗଲା ।

ସେହି ଅଛେ ଭାଇ ଯେ' ବରିଲେ ବନବାସ
ଜଙ୍ଗଲରେ ହେଲେ ରାଜା ତେଜି ବିଶ୍ୱ-ମାତ
ସେହି ଅଛେ ଭାଇ ଯାର ଟଳେ ନାହିଁ ଦୁଃଖ
ବଳିଦାନ ଦେବା ଲାଗି ନିଜର ଜୀବନ
ଯେଉଁମାନେ ଗଲେ ଚାଲି ଗଲେ ଚିରଦିନ

ଫେରିତ ଆସିଲେ ନାହିଁ ଅରୁଚିଏ ମାତ୍ର
ଠିଆ ହୋଇ ଦୂରେ ଯଦି କରେ ମୁଁ ଶାସନ
ଦର୍ଶକ ମୁଁ, ରାଜତ୍ୱରେ ନାହିଁ ମୋର ମନ
ଏପରି ହେବାରେ ରାଜା କିବା ପ୍ରୟୋଜନ
ଧନ୍ୟ ଏହି ଦରବାର, ଧନ୍ୟ ଏ ଶାସନ !

ମୂଳ ରଚନାରେ ଛନ୍ଦକୁ ସଂଗ୍ରନ୍ଥିତ କରାଯାଇଛି । ପ୍ରତ୍ୟେକ ଆବେଗର ରୂପକୁ ବ୍ୟକ୍ତ କରିବାକୁ ଏକ ଏକ ଅନୁପ୍ରାସର ସଂଯୋଜନା କରାଯାଇଛି । ଏ ସବୁକୁ ଗୋଟିଏ ଗୋଟିଏ ଗ୍ରାଫ୍‌ରେ ଅଙ୍କାଯାଇପାରେ । ଶତ୍ରୁଘ୍ନଙ୍କ ବକ୍ତବ୍ୟର ଆବେଗାତ୍ମକ ରୂପ ପାଇଁ ଗୋଟିଏ, ଅନ୍ୟଟି ବାଚନିକ ରୂପ ପାଇଁ । ଉଭୟ ଗ୍ରାଫ୍ ଖୁବ୍ ସୁନ୍ଦର ଭାବେ ପରସ୍ପର ସହ ଯୋଗାଯୋଗ ରକ୍ଷାକରିବେ । ଏହା ଦେଖିଲେ ମୂଳ ତାମିଲ କାବ୍ୟର ଅପୂର୍ବ ସୌନ୍ଦର୍ଯ୍ୟ କଳ୍ପନା କରି ହେବ ।

ରାଜାଭିଷେକ

ଅଯୋଧ୍ୟାର ପ୍ରଜାଗଣ ଶତ୍ରୁଘ୍ନଙ୍କ ଏପରି ଅଶ୍ରୁଳ ସଙ୍କଟାବସ୍ଥା ତଥା ଭରତଙ୍କ ଦୃଢ଼ କଠିନ ସଂକଳ୍ପ ଦେଖି ଅତୀବ ବିଚଳିତ ହୋଇପଡ଼ିଲେ । ଠିକ୍ ଏହି ସମୟରେ ହନୁମାନ ସେଠାରେ ପହଞ୍ଚି ଉଚ୍ଚସ୍ୱରରେ କହିଲେ, 'ରାମ ପହଞ୍ଚିଗଲେ' । ନିଜ ହାତରେ ହନୁମାନ ଅଗ୍ନିକୁ ନିର୍ବାପିତ କରିଦେଲେ ଏବଂ ତାଳିବଜାଇ ଆନନ୍ଦରେ ନାଚିଉଠିଲେ । ରାମଙ୍କ ପ୍ରତ୍ୟାବର୍ତ୍ତନର ଶୁଭ ଖବର ଶୁଣି ଭରତ ଆନନ୍ଦରେ ଅଧୀର ହୋଇପଡ଼ିଲେ । ପାଗଳ ପ୍ରାୟ ହୋଇଗଲେ । ତାଙ୍କ ଚତୁଃପାର୍ଶ୍ୱେ ଥିବା ସମବେତ ଜନତାଙ୍କୁ ପ୍ରଣିପାତ କଲେ । ରୂକରାଣୀ ଏପରିକି ନିଜକୁ ମଧ୍ୟ ପ୍ରଣାମ ଜଣାଇଲେ । ଆନନ୍ଦର ମଦିରା ତାଙ୍କ ସର୍ବାଙ୍ଗକୁ ସଂକ୍ରମିତ କରିବାକୁ ଲାଗିଲା । କବିଙ୍କ ଭାଷାରେ—

ଏ ଯେଉଁ ପ୍ରେମର ଧାରା
ଏହାକୁ ତ କହୁଥାନ୍ତି
ପ୍ରେମର ମଦିରା ।

ଅଳ୍ପ ସମୟ ମଧ୍ୟରେ ବିଭୀଷଣ, ସୁଗ୍ରୀବ ଓ ବାନରସେନାଙ୍କସହ ପ୍ରବେଶ କଲେ ରାମ, ଲକ୍ଷ୍ମଣ ଓ ସୀତା । ସମଗ୍ର ଅଯୋଧ୍ୟାରେ ଆନନ୍ଦର ଲହରୀ ଖେଳିଗଲା । ବାଦ୍ୟଯନ୍ତ୍ରର ସଂଗୀତ ମଧ୍ୟରେ ରାମଙ୍କର ରାଜାଭିଷେକ ଅନୁଷ୍ଠିତ ହେଲା ।



# ଉପସଂହାର

କିମ୍ବୁ ପୁରାଣ ଏକ ବିଶାଳ ଗ୍ରନ୍ଥ; ଏହା ଦଶ ହଜାରରୁ ଅଧିକ ପଦ୍ୟର ସମାହାର । ଏହି ଭୂମିକାରେ ଏଣୁ ସେ ସବୁର ଆକଳନ ସମ୍ଭବପର ନୁହେଁ । ପୁରାଣ-ସାର କବି ଜୀବନର ସେଇ ନିୟନ୍ତ୍ରଣକର୍ତ୍ତାଙ୍କ ନିକଟରେ ଆତ୍ମସମର୍ପଣ ମାଧ୍ୟମରେ ନିଜର ଲେଖନୀ ଚାଳନା କରିଛନ୍ତି । ହିରଣ୍ୟ ବଡ଼ାଇ ପଦଲମ୍‌କୁ ଉଦାହରଣ ସ୍ୱରୂପ ନିଆଯାଉ । କବି ଏଠାରେ ସମ୍ପୂର୍ଣ୍ଣ ଭାବେ ଏକ ମୌଳିକ ଓ ତୀବ୍ର ନାଟକୀୟ ପରିସ୍ଥିତି ସୃଷ୍ଟି କରି ପାରିଛନ୍ତି । ଏ ଦୃଶ୍ୟରେ ଈଶ୍ୱର ସୃଷ୍ଟିର ସ୍ୱରୂପ ବ୍ରହ୍ମା ଚରମ ଅସ୍ତିତ୍ୱ ବିଷ୍ଣୁଙ୍କ ସହ କଥୋପକଥନରେ ରତ ଅଛନ୍ତି । ଏହି ସମୟରେ ହିରଣ୍ୟର ପୁତ୍ର ପ୍ରହ୍ଲାଦଙ୍କ ପ୍ରାର୍ଥନା ତାଙ୍କ କର୍ଣ୍ଣରେ ପ୍ରତିଧ୍ୱନିତ ହୋଇଛି । ବିଶ୍ୱବ୍ରହ୍ମାଣ୍ଡର ବକ୍ଷ ଧ୍ୱସ୍ତବିଧ୍ୱସ୍ତ କରି ପୃଥିବୀ ପୃଷ୍ଠରେ ପ୍ରବେଶ କରିଛନ୍ତି ଈଶ୍ୱର । ମନୁଷ୍ୟର ଶରୀର ଓ ସିଂହର ଶିର ଧାରଣ କରି ହିରଣ୍ୟ ସମ୍ମୁଖରେ ଉପସ୍ଥିତ ହୋଇଛନ୍ତି ଏବଂ ନିଜର ରକ୍ତାକ୍ତ ନଖଦନ୍ତରେ ତାଙ୍କୁ ବିଦାରିଛନ୍ତି । ନରସିଂହ (ମଣିଷ-ସିଂହ) ଗର୍ଜନରେ ପୃଥିବୀ କମ୍ପିଲାବେଳେ କବି ତାଙ୍କର ଚିରନ୍ତନ ଅନୁପମ କଳାତ୍ମକ ଶୈଳୀ ଓ ରସିକତାରେ ବ୍ରହ୍ମାଙ୍କୁ ପରିଚିତ କରାଇଛନ୍ତି ଏବଂ 'ସ୍ୱର୍ଗର ସିଂହ'କୁ ପରିତୁଷ୍ଟ କରିବା ହୋଇଛି ତାଙ୍କର ଲକ୍ଷ୍ୟ । ପରମ ଭକ୍ତ ଓ ସ୍ନେହଶୀଳ ବନ୍ଦୋକ୍ତିରେ ବ୍ରହ୍ମା ଗାଇଛନ୍ତି—

ଏହିରୂପେ ଅବତରି ଆହେ ଅନ୍ତର୍ଯାମୀ
ଆସିଅଛ ଏ ଧରାରେ ହେ ସ୍ୱାମୀଙ୍କ ସ୍ୱାମୀ
ପ୍ରମାଣ ଦେଇଛ ନିଜେ ନିଜକୁ ହିଁ ସୃଜି !
କିନ୍ତୁ ସ୍ୱୟଂ-ସୃଷ୍ଟ ହୋଇ
　　　　କି ଲାଭ ବା କଲ
ମୋର ରାଜ୍ୟ ପରିସୀମା
　　　　ଅନ୍ଧାର କଲ
ଯେଉଁପାଇଁ ମତେ ତମେ
　　　　କରିଲ ସର୍ଜନା
ନିଷ୍ଫଳ କରିଲ ତାକୁ
　　　　ସୃଜି ରୂପ ନାନା ।

ବ୍ରହ୍ମାଙ୍କ ଏ ବ୍ୟାଙ୍ଗୋକ୍ତିପକ ଅଭିଯୋଗରେ ଯୁକ୍ତି ଅପେକ୍ଷା ଭକ୍ତିର ଅଂଶ ବେଶି ରହିଛି । ସର୍ବଶକ୍ତିମାନ ଈଶ୍ୱର ନିଜର କ୍ଷମତା ହସ୍ତାନ୍ତରିତ କଲାପରେ ତାର ବିଚ୍ୟୁତି ଆଚରଣ କରିବା ଯଥାର୍ଥ ନୁହେଁ । କିନ୍ତୁ ସର୍ବଶକ୍ତିମାନଙ୍କ ବିରୁଦ୍ଧରେ କରିଥିବା ନିମ୍ନ ଅଭିଯୋଗ ପ୍ରସ୍ତାବରେ ସତ୍ୟତା ରହିଛି ।

ସାଗରର ସୀମାହୀନ ଜଳକଣା ପରି
କେତେ ଗ୍ରହ କେତେ ଯେ ନକ୍ଷତ୍ର
ଘୂରୁଥାନ୍ତି ତମ ଦେହେ
ଆହେ ପ୍ରଭୁ ଅନାଦି ଅନନ୍ତ !
ତମେ ପ୍ରଭୁ ବିଶ୍ୱରୂପୀ
ହୁଏନାହିଁ ତମର କଳନା
କିନ୍ତୁ କମ୍ପା ଏକ ରୂପେ
ହେଲ ଆଜ ଭିଖ
ଫଙ୍କାଷ୍ଟି କରିଲ କମ୍ପା
ପ୍ରକାଣ୍ଡ ସ୍ୱରୂପ
ତମେ ତ ବହୁଳ ରୂପ
ଅନାଦି ଅନନ୍ତ !

ଈଶ୍ୱରଙ୍କ ଅସୀମତା ଏବଂ ତାଙ୍କ ସୀମାବଦ୍ଧତା ମଧ୍ୟରେ ଥିବା ଅସାମଞ୍ଜସ୍ୟତା ପ୍ରସଙ୍ଗ ଉତ୍ଥାପନ କରି ବ୍ରହ୍ମା ନିମ୍ନଲିଖିତ ପଦ୍ୟରେ ଈଶ୍ୱରଙ୍କ ଅନ୍ତଃନିହିତତା ଓ ଅଲୌକିକତା ମଧ୍ୟରେ ଅସ୍ୱାଭାବିକତାକୁ ଦର୍ଶାଇଛନ୍ତି ।

ତମ ବିନା ନାହିଁ ମୋର ସ୍ଥିତି
ତମ କୃପା ବିନା ପ୍ରଭୁ ପାରିବିନି
ଜୀବ କମ୍ପା ପଦାର୍ଥରେ ସୃଜି
ନାହିଁ ପୂର୍ବ ନାହିଁ ପର ମୋର
ମୁଁ ତ ଠିକ୍ ଏକ ସ୍ୱର୍ଣ୍ଣକାର
ଜନ୍ମଲଭି ତମ ସେଇ ସ୍ୱର୍ଣ୍ଣାଭ ଗର୍ଭରେ
ତମ କୃପା ଲଭି କରି
ଗଢୁଚି ମୁଁ ଯେ ସ୍ୱର୍ଣ୍ଣକୁ ଭିନ୍ନ ଭିନ୍ନ କରି ।

କମ୍ପନ ଏହିପରି ଅନେକ ପଦ୍ୟରେ ସ୍ରଷ୍ଟାଙ୍କ ସହ ଅନେକ ଆଧିଭୌତିକ ଯୁକ୍ତି ଉପସ୍ଥାପନ କରିଛନ୍ତି । ତାଙ୍କ ପଦ୍ୟମାନଙ୍କର ବ୍ୟାପକତା ଏବଂ ସାହସିକତା

ଏବଂ ସେଥିରେ ପର୍ଯ୍ୟାପ୍ତ ବାନ୍ୟ ରସ ଏବଂ କାରୁଣ୍ୟ ତଥା ସେ ପଦ୍ୟଗୁଡ଼ିକର ଔଜ୍ଜ୍ୱଲ୍ୟ ଓ ନାଟକୀୟ ଶକ୍ତି ପୃଥିବୀର ଯେକୌଣସି ଉଚ୍ଚତମ ସୃଷ୍ଟି ସହ ସମକକ୍ଷ ହୋଇ ପାରିବ । ଏହାର ଅଦ୍ୱୈତ ଭାବଧାରା, ଆପେକ୍ଷିକ ପୃଥିବୀରେ ବାସକରୁଥିବା ବ୍ୟକ୍ତିକୁ ନିଶ୍ଚିତ ଭାବେ ଆଶ୍ଚର୍ଯ୍ୟାନ୍ୱିତ କରିବ । କିନ୍ତୁ କମ୍ବନ ତାଙ୍କ କାବ୍ୟିକ ପ୍ରବୃତ୍ତି ମାଧ୍ୟମରେ ଏହି ଆଶ୍ଚର୍ଯ୍ୟକୁ ଏକ ପ୍ରକୃତ ନାଟକୀୟ ରୂପ ପ୍ରଦାନ କରି ଏହା ଅଦ୍ୱୈତ ସତ୍ୟର ପ୍ରକୃଷ୍ଟ ପ୍ରମାଣ ବୋଲି ଉପସ୍ଥାପିତ କରିଛନ୍ତି ।

କମ୍ବନଙ୍କ ସଫଳତା ତାଙ୍କର ସମସ୍ତ ବକ୍ତବ୍ୟ ଉପରେ ନିର୍ଭର କରିନାହିଁ, ଏହା ତାଙ୍କ ବକ୍ତବ୍ୟର ଶୈଳୀ ଉପରେ ହିଁ ପର୍ଯ୍ୟବସିତ ହୋଇଛି । ତାଙ୍କର ପ୍ରତ୍ୟେକ ଶବ୍ଦ ଏକ ଏକ ପ୍ରୟୋଜକ ଶକ୍ତିର ପ୍ରତିରୂପ, ଯାହାଦ୍ୱାରା ଜୀବନ୍ତ ସତ୍ୟ ମାନବୀକ ଧ୍ୱନିର କମ୍ପନରେ ରୂପାନ୍ତରିତ ହୋଇଛି । ଏବଂ ଯେଉଁମାନେ ଏହି ଧ୍ୱନିର କମ୍ପନ ଶୁଣି ପାରନ୍ତି, ଯଦିଓ ସେମାନେ ଅନୁବାଦର ଅତି କ୍ଷୀଣ ଏବଂ ସୃଜନଶକ୍ତିଶୂନ୍ୟ କମ୍ପନ ଶୁଣି ପାରିବେ ନାହିଁ ।

କମ୍ବନଙ୍କ ବିଚାରରେ ଜୀବନଟା କେବଳ ଶବ୍ଦ ଓ କୋଳାହଳରେ ପରିପୂର୍ଣ୍ଣ ନୁହେଁ, ଏହା ମୂଲ୍ୟବୋଧଶୂନ୍ୟ ନୁହେଁ । ତାଙ୍କପାଇଁ ଜୀବନ ମୂଲ୍ୟବୋଧ, ଶୃଙ୍ଖଳା ଓ ମର୍ଯ୍ୟାଦା ମଧ୍ୟରେ ଉତ୍ତୀର୍ଣ୍ଣ । କମ୍ବନଙ୍କ କଳାରେ ଉଭୟ ସଜୀବ ଓ ନିର୍ଜୀବଙ୍କ ପାଇଁ ଅମାପ ସହୃଦୟତା ମଧ୍ୟରୁ ଜନ୍ମଲାଭ କରିଥାଏ, ତାଙ୍କ ପାଇଁ ଜୀବନର ଦୃଷ୍ଟି ବା ଦର୍ଶନ ରହିଛି; କିନ୍ତୁ ଜାଗତିକ ପ୍ରାଣୀର କୌଣସି କୌଣସି ଅବସ୍ଥାରେ ସେ ପାର୍ଥିବ ଜୀବନର ଘଟଣାବଳୀର ସମୀକ୍ଷା କରିଥାନ୍ତି । ଜୀବନ-ଯାତ୍ରାରେ ଯେଉଁସବୁ ଘଟଣା ପରିଦୃଶ୍ୟ ହୋଇଥାଏ, ତାହା ପୂର୍ବଜନ୍ମର କର୍ମ-ଫଳ ବୋଲି ଧରାଯାଏ ଏବଂ ମୃତ୍ୟୁ ପରେ ମଧ୍ୟ ଜୀବନ ଉପରେ ଏହାର ପ୍ରଭାବ ବିସ୍ତାରିତ ହୋଇଥାଏ । ଏଣୁ ସେ ଜୀବନର ଗମ୍ଭୀରତା ଭିତରେ ପ୍ରବେଶ କରିଥାଏ, 'ଚିରନ୍ତନର' ପୂର୍ବ ଓ 'ଚିରନ୍ତନ'ର ପରକୁ ଖନନ କରିଥାଏ; ତାର ଚେତନାରେ ମଣିଷ କାଳଶୂନ୍ୟ ଅନାଦି ଅନନ୍ତର ଅଂଶ-ବିଶେଷ ବୋଲି ତାର ହୃଦ୍‌ବୋଧ ହୋଇଥାଏ । ଜୀବନର ଐନ୍ଦ୍ରଜାଲିକ ଅସ୍ତିତ୍ୱକୁ ପର୍ଯ୍ୟବେକ୍ଷଣ କରିବାକୁ ଏହା ତାକୁ ସୁଯୋଗ ଦେଇଥାଏ ଏବଂ ଜୀବନର ବହୁ ବିଚ୍ଛିନ୍ନ ଅଂଶକୁ ଏକୀଭୂତ କରି ତାର ପୂର୍ଣ୍ଣତ୍ୱକୁ ଗଭୀର ଆଶାବାଦ ତଥା ତୀକ୍ଷ୍ଣଦୃଷ୍ଟି ମାଧ୍ୟମରେ ସମୀକ୍ଷା କରିଥାଏ । ଏହି ଅନ୍ତଃଦୃଷ୍ଟି କମ୍ବନଙ୍କୁ ଏକ ନିଶ୍ଚୟ ଯୋଗାଇ ଥାଏ । ଏକଦା ପ୍ଲାଟୋଙ୍କ ଉପରେ ମନ୍ତବ୍ୟ କରି ଇମରସନ୍ କହିଥିଲେ, ପ୍ଲାଟୋଙ୍କ ଅନ୍ତଃଦୃଷ୍ଟିର ସୂର୍ଯ୍ୟସମ କେନ୍ଦ୍ରସ୍ଥଳରୁ ଜନ୍ମଲାଭ କରିଥାଏ ତାଙ୍କର କଳୁଷଶୂନ୍ୟ ବିଶ୍ୱାସ ! ଏହା ମଧ୍ୟ କମ୍ବନଙ୍କ କ୍ଷେତ୍ରରେ ପ୍ରଯୁଜ୍ୟ ।

ଏହା କହିଲେ ଠିକ୍ ହେବନି ଯେ, କମ୍ବନ ଜଣେ ଉଗ୍ର ଦାର୍ଶନିକତାବାଦୀ
କବି କିମ୍ବା ଧର୍ମରୂପୀ ପଣ୍ୟଦ୍ରବ୍ୟର ପ୍ରଚାରଧର୍ମୀ ବ୍ୟବସାୟୀ ଥିଲେ। ବାସ୍ତବ ପୃଥିବୀର
ଚରିତ୍ର ଓ ପରିବେଶ ମଧ୍ୟରୁ ଉପାଦାନ ଗ୍ରହଣ କରି କମ୍ବନଙ୍କ ପୁରାଣ ଜୀବନ ଓ ପ୍ରକୃତି
ମଧ୍ୟଦେଇ ଗତି କରିଥାଏ। କର୍କଶ ମରୁଭୂମିର ଶୁଷ୍କତା ବର୍ଣ୍ଣନା କରିବାକୁ ଯାଇ ଅତି
ସନ୍ତର୍ପଣ ସହ କବି ବେଶ୍ୟା କିମ୍ବା ଜୀବନ୍ମୁକ୍ତ ଖୋଜୁଥିବା ସନ୍ନ୍ୟାସୀର ମାନସିକ
ସ୍ଥୈର୍ଯ୍ୟ ସହ ତୁଳନା କରିଛନ୍ତି। ସମୁଦ୍ର ବକ୍ଷରେ ସେତୁ ନିର୍ମାଣ ପ୍ରସଙ୍ଗ ଉତ୍ଥାପନ
କରି ଗୋଟିଏ ବାନରର ତିନୋଟି ପାହାଡ଼ ଉଠେଇ ନେବା ଦୃଶ୍ୟ ଅତି ସ୍ନେହଶୀଳ
ଦୃଷ୍ଟିରେ ବର୍ଣ୍ଣନା କରିଛନ୍ତି। ବାନରର ଗୋଟିଏ ପାହାଡ଼ ତା' ପାଦରେ, ଅନ୍ୟଟି
ତାର ପ୍ରସାରିତ ବାହୁରେ ଏବଂ ତୃତୀୟଟି ତାର ଲାଞ୍ଜରେ ଗୁଡ଼େଇ ନେବାର ଦୃଶ୍ୟ
ତାଙ୍କ ବର୍ଣ୍ଣନାରେ ଅତୀବ ଜୀବନ୍ତ ରୂପ ଗ୍ରହଣ କରିଛି। ଶହ ଶହ ଯୁଦ୍ଧକୁ ଅବଲମ୍ବେ
ବ୍ୟକ୍ତିଗତ ଭାବେ ନଜଡ଼ାଇ ଅତି ସୁନ୍ଦର ଭାବେ ବର୍ଣ୍ଣନା କରିପାରନ୍ତି କମ୍ବନ।
ପ୍ରତ୍ୟେକ ଯୁଦ୍ଧକୁ ଅନ୍ୟଠାରୁ ସ୍ୱତନ୍ତ୍ର ଭାବେ ପରିକଳ୍ପନା କରି ପ୍ରତ୍ୟେକଟିରେ ରୋମାଞ୍ଚ,
ଅନିଶ୍ଚୟତା ଓ ଉତ୍କଣ୍ଠାରେ ଭରିଦିଅନ୍ତି। ମନୁଷ୍ୟ ହୃଦୟର ଜଣେ ବିଚକ୍ଷଣ
ବିଚାରକ ଭାବେ ମଣିଷଙ୍କ ପ୍ରତ୍ୟେକ କର୍ମର ପ୍ରଚ୍ଛନ୍ନ ରହସ୍ୟ ଉଦ୍‌ଘାଟନ କରିପାରନ୍ତି।
ପୁରାଣର କର୍କଶତାକୁ ନାଟକୀୟ କମନୀୟତା ଦ୍ୱାରା କୋମଳ କରି ଉଭୟଙ୍କୁ ନିଜର
ଲାଳିତ୍ୟପୂର୍ଣ୍ଣ ଔଜ୍ଜ୍ୱଲ୍ୟରେ ଆଲୋକିତ କରନ୍ତି।

କମ୍ବନ ତାଙ୍କ ସମସ୍ତ ସୃଷ୍ଟିରେ ପାଠକମାନଙ୍କ ମନରେ ଏକ ଘନିଷ୍ଠ
ଆତ୍ମୀୟତା ସୃଷ୍ଟି କରିପାରନ୍ତି। ତାଙ୍କ କୃତ ରାମାୟଣର ପବିତ୍ର ଜଳରେ ବାରମ୍ବାର
ବୁଡ଼ିବାର ସ୍ପୃହା ସୃଷ୍ଟି କରନ୍ତି କମ୍ବନ ଏବଂ ଏକ ସୁନ୍ଦର ଆଦର୍ଶବୋଧ ନେଇ ପାଠକ
ସେ ଜଳରୁ ଉଠିଲାବେଳେ ପୁଣ୍ୟର ରକ୍ଷା ପାଇଁ ତା' ମନରେ ଏକ ଅହେତୁକ ଇଚ୍ଛା
ଜାଗ୍ରତ ହୁଏ। ସତ୍ୟ ଓ ସୁନ୍ଦର ପାଇଁ ତାର ଏକ ତୀକ୍ଷ୍ଣ ସଚେତନତା ଜାତ ହୁଏ ଏବଂ
ଚିରନ୍ତନ ପ୍ରଶ୍ନ ପଚାରିବାରେ ତାର ଅପୂର୍ବ ସାହାସ ସୃଷ୍ଟି ହୁଏ ଏବଂ ସେଗୁଡ଼ିକ ସମାଧାନ
କରିବାର ଅପାର ବିଶ୍ୱାସ ପାଇଥାଏ।

ନିଜର ମହାନ କାବ୍ୟିକ ଶକ୍ତି ମାଧ୍ୟମରେ ସବୁକିଛି ସଫଳ ଭାବେ ହାସଲ
କରିଥାନ୍ତି କମ୍ବନ। କମ୍ବନଙ୍କ କାବ୍ୟ-ଧ୍ୱନିରେ ଏକ ଅଦ୍ୱିତୀୟ ପୂର୍ଣ୍ଣତା ଥାଏ,
ସେଥିରେ ମଧ୍ୟ ଥାଏ ବିଭିନ୍ନତା ଓ ପ୍ରାଚୁର୍ଯ୍ୟ। ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନବର୍ଣ୍ଣକୁ ଏଭଳି
ଭାବେ ସିଦ୍ଧି ଓ ଐନ୍ଦ୍ରଜାଲିକ ପଦ୍ଧତିରେ ସେ ପ୍ରୟୋଗ କରନ୍ତି, ତାହା ଯେକୌଣସି
ମାନସିକ ଅବସ୍ଥା ଓ ଆବେଗକୁ ସୁନ୍ଦର ଭାବେ ପ୍ରକାଶିତ କରିପାରେ। ତାଙ୍କର
ଧ୍ୱନିଗତ ଆବିଷ୍କାର ପାଠକର କୋଳାହଳପୂର୍ଣ୍ଣ ଜୀବନକୁ ଶାନ୍ତ ଓ ନୀରବତାର
ରଙ୍ଗରେ ରଙ୍ଗୀନ କରିପାରେ। ବ୍ୟକ୍ତିଗତ ଇଚ୍ଛାର ଚାପଦ୍ୱାରା ବିଚଳିତ ନ ହୋଇ

କବିଙ୍କର ବାର୍ତ୍ତା ଆସ୍ୱାଦ କରିଥାଏ ପାଠକ । ଏ ସମସ୍ତ ପ୍ରୟୋଗଗତ ସ୍ୱତଃସ୍ଫୂର୍ତ୍ତି ଭାବେ ପାଠକ ପ୍ରାଣକୁ ଆନ୍ଦୋଳିତ କରିଥାଏ ଏବଂ କବିଙ୍କ ପ୍ରାକ୍ ସୃଷ୍ଟିର ବେଦନାକୁ ସଫଳ ଭାବେ ପରିବ୍ୟକ୍ତ କରିବାରେ ଅନନ୍ୟସ୍ୱ ସୃଷ୍ଟି କରେନ । ବିଶ୍ୱ ସୃଷ୍ଟିର ପଶ୍ଚାତ୍‌ଭାଗରେ ଲୁକ୍କାୟିତ ଗଭୀର ଅପରିବର୍ତ୍ତନଶୀଳ ଉଦ୍ଦେଶ୍ୟକୁ ବର୍ଣ୍ଣନା କରିବାକୁ ଯାଇ କିମ୍ବା ସ୍ଥିତିର ଅନ୍ତର୍ଭାଗରେ ଦୃଷ୍ଟିଦିଗନ୍ତକୁ ରୂପାୟିତ କରିବାକୁ ଯାଇ, ତାଙ୍କ ଧ୍ୟାନ ଧ୍ୟାନଗ୍ରସ୍ତ ମୁହୂର୍ତ୍ତକୁ ପରିବର୍ଦ୍ଧିତ କରିଥାଏ । ଏହାହିଁ ହେଉଚି କମ୍ବନଙ୍କ କବିତାର "ଅତର" ଏବଂ ତାମିଲଙ୍କ ସାଧାରଣ ବିଚାରରେ, କମ୍ବନ ହେଉଛନ୍ତି ଯଥାର୍ଥରେ 'କବି ଚକ୍ରବର୍ତ୍ତୀ' କିମ୍ବା 'କାବ୍ୟ-ସମ୍ରାଟ' ।



# ସହାୟକ ଗ୍ରନ୍ଥସୂଚୀ

## କମ୍ବନଙ୍କ ଉପରେ ତାମିଲ ପୁସ୍ତକ


୧ । କମ୍ବର ଥାରୁମ ରମାୟଣମ୍—ରସିକମଣି ଟି. କେ. ଚଦାମ୍ବରନାଥ ମୁଦାଲିୟର

୨ । କମ୍ବର ୟାର ?—ରସିକମଣି ଟି. କେ. ଚଦାମ୍ବରନାଥ ମୁଦାଲିୟର

୩ । କମ୍ବ ରମାୟଣ ସାରମ୍—ଭି. ପି. ସୁବ୍ରମଣିଆ ମୁଦାଲିୟର

୪ । ୱାର ମାନଗର୍—ଡଃ ଆର୍. ପି. ସେଠୁ ପିଲ୍ଲାଇ

୫ । କମ୍ବ ଚନ୍ଦମ୍—ପି. ଶ୍ରୀ ଆଚାର୍ଯ୍ୟ

୬ । ଅଶୋକ ବନମ୍—ପ୍ରଫେସର୍ ଏ. ମୁଥୁଶିବମ୍

୭ । କମ୍ବନ କାବ୍ୟ ମାଲାଇ—ସୋ. ମୁରୁଗାପା

୮ । କଲ୍‌ବର୍ଘିଲ୍ ପେରିୟାବାର କମ୍ବର—ଏ. ଭି. ସୁବ୍ରମଣିଆ ଆୟାର୍

୯ । ରବଣନ୍ ମଡ୍ୟଲୁମ୍, ବଚିୟୁମ୍—ପ୍ରଫେସର୍ ଏ. ଏସ୍. ଜ୍ଞାନସମ୍ବନ୍ଦମ୍

୧୦ । ସୀତା କଲ୍ୟାଣମ୍ ଓ ପାଦୁକା ପଟ୍ଟାଭିଷେକମ୍—ଟି. ଏମ୍. ଭାସ୍କର ତୋଣ୍ଡାଇମନ୍

୧୧ । କମ୍ବ ରମାୟଣମ୍—ଭି. ଏମ୍. ଗୋପାଳକୃଷ୍ଣ ମାଚ୍ଚାରିଆର୍

୧୨ । ଓଙ୍ଗଲ କମ୍ବନ—(ପାଠଚକ୍ର)


## ଇଂରେଜୀ ଭାଷାରେ ପୁସ୍ତକ


1. Studies in Kamba Ramayana—V. V. S. Iyer
2. Select Translations from Kamban—V. S. Mudaliar




କମ୍ବନ ନବମ ଶତାବ୍ଦୀର ବିଖ୍ୟାତ ତାମିଲ କବି ଭାବରେ ପରିଚିତ । ତାଙ୍କର ଉକ୍ତମାନର କବିତାଗୁଡ଼ିକ ଶତାବ୍ଦୀର ଶ୍ରେଷ୍ଠ କବିତା ରୂପେ ଗଣ୍ୟ, କାରଣ ସମାଜର ବିଭିନ୍ନ ସମସ୍ୟାକୁ ସମ୍ମୁଖୀନ ହେବାକୁ ମନୁଷ୍ୟର ଆବଶ୍ୟକୀୟ ଭାବଧାରା ଯେଉଁଟା ଶେଷ ସମୟ ପର୍ଯ୍ୟନ୍ତ ପ୍ରୟୋଜନ, ତାହାରି ସହିତ କବିଙ୍କର କବିତାଗୁଡ଼ିକର ଏକ ଅପୂର୍ବ ସମ୍ପର୍କ ପରିଲକ୍ଷିତ ହୁଏ । ତେଣୁ ତାଙ୍କୁ *କବି ଚକ୍ରବର୍ତ୍ତୀ* ବା କବି ସମ୍ରାଟ ଭାବରେ ଆଖ୍ୟାୟିତ କରିବାଟା ଯଥାର୍ଥ ।

ଏଡ୍‌ଓ୍ୱାର୍ଡ ଲିଉଡାରସ ଆମେରିକାର ଜୈନିକ ବିଖ୍ୟାତ କବି କମ୍ବନଙ୍କର କବିତାଗୁଡ଼ିକର ଅନୁବାଦ ଉପରେ ଦୃଷ୍ଟି ଆକର୍ଷଣ କରି କହିଛନ୍ତି ଉଦ୍ଧୃତାଂଶଗୁଡ଼ିକ ଦେଖିବାପରେ ମନେହୁଏ ଅନୁବାଦକ ଯେମିତି କବିଙ୍କ ସହିତ କାମ କରିଛନ୍ତି ଏବଂ ପ୍ରକୃତରେ କବିତାଗୁଡ଼ିକ ଉଚ୍ଚ ଚିନ୍ତା-ସମ୍ପନ୍ନ କାବ୍ୟ କବିତା ।

କବି କମ୍ବନ ତାଙ୍କ କବିତା ମାଧ୍ୟମରେ ବିଶ୍ୱ ସମ୍ବନ୍ଧୀୟ ବ୍ୟକ୍ତିତ୍ୱାରୋପ ଭଳି ଉଚ୍ଚ ବିଶ୍ୱ ଚିନ୍ତାଧାରାକୁ ମନୁଷ୍ୟ ସହିତ ବାନ୍ଧିବାକୁ ସକ୍ଷମ ହୋଇଛନ୍ତି ।

ଲେଖକ ଜଷ୍ଟିସ ଏସ. ମହାରାଜନ ମାଡ୍ରାସ ଉଚ୍ଚ ନ୍ୟାୟାଳୟର ବିଗ୍ରତପତି ଏବଂ କମ୍ବନ ଓ ତାଙ୍କ କବିତାର ପ୍ରେମୀ, ତାହାହିଁ ତାଙ୍କ ରଚନା ମଧ୍ୟରେ ପ୍ରସ୍ଫୁଟିତ ହୋଇ ଉଠିଛି ।

ପ୍ରଚ୍ଛଦ : ସତ୍ୟଜିତ୍ ରାୟ
ପ୍ରତିକୃତି : କେ. ଆନନ୍ଦ
ମୂଲ୍ୟ : ୧୫ ଟଙ୍କା
ISBN 81-7201-885-1